
ଆନନ୍ଦ ସ୍ରୀତ
କ୍ୟାଡବରୀଜ
ଜେମ୍ସ
Cadbury's
MILK CHOCOLATE
GEMS
ରଙ୍ଗୀନ ଚକଲେଟ୍-କେନ୍ଦ୍ରିତ କ୍ୟାଡବରୀଜ ଜେମ୍ସ
CHAITRA-C-105 ORI

# ପ୍ରତ୍ୟେକ କୁମକୁମ୍ ଏକ ଜାତିର ନୁହେଁ

**ଶିଙ୍ଗାର ଅତ୍ୟଧିକ ଉଚ୍ଚ ଜାତିର**
**ମସୃଣ, ସମାନ ଭାବରେ ଲଗାଯାଏ ।**
**ଅନେକ ବେଶୀ ସୁନ୍ଦର,**
**ବିଖୁରି ଯାଏନା, ଛାଡ଼େନା ।**
**କୌଣସି ଦାଗ ପଡ଼େନି ।**
**ବୈଜ୍ଞାନିକ ପଦ୍ଧତିରେ ତିଆରି ।**

ସୁତରାଂ ସର୍ବଦା ଲଗାନ୍ତୁ

## ଶିଙ୍ଗାର

ଭାରତର ସବୁଠାରୁ ବେଶୀ
ବିକ୍ରି ହେଉଥିବା
ମନମତାଣିଆ କୁମକୁମ

ପ୍ୟାରାମାଉଣ୍ଟ ପ୍ରୋଡକ୍ଟସ, ୮୦୯, ପ୍ରସାଦ ଚେମ୍ବରସ,
ବମ୍ବେ-୪୦୦ ୦୦୮ ।





୬ ଟି ରଙ୍ଗବାଲ୍ ପକେଟ

# ଜହ୍ନ ମାମୁଁ

ସଂସ୍ଥାପକ : 'ଚକ୍ରପାଣୀ'
ସଞ୍ଚାଳକ : ନାଗି ରେଡ୍ଡୀ

"ବୀର ହନୁମାନ" ଲେଖାରେ ଏଥର ରହିଛି ଏକ ତାତ୍ପର୍ଯ୍ୟପୂର୍ଣ୍ଣ କଥା । ୫୭ ପୃଷ୍ଠାରେ ଥିବା ମଜାର ଚିତ୍ରଟି ପ୍ରତି ଦୃଷ୍ଟିପାତ କରନ୍ତୁ । ଭୋଜି ସଭାରେ ବସି ବାନର-ମାନେ ହଠାତ୍ ଆନନ୍ଦରେ ଡିଆଁଡେଇଁ ଆରମ୍ଭ କରି ଦେଇଛନ୍ତି । କିନ୍ତୁ ବୀର ହନୁମାନ ଥରେ ମାତ୍ର ଡେଇଁ ସାରି ଚୁପ୍‌ଚୁପ୍ ବସିଛନ୍ତି । ସେ ବେଶୀ କାହିଁକି ଡେଉଁ ନାହାନ୍ତି ବୋଲି ପ୍ରଶ୍ନ ହୁଅନ୍ତେ ଜାମ୍ବବାନ ବୁଝାଇ ଦେଲେ—ସେ ନିଜ ଆନନ୍ଦ ପାଇଁ ବା ନିଜ ଖିଆଲ୍ ଅନୁସାରେ କୌଣସି କାମ କରନ୍ତି ନାହିଁ । ଏକମାତ୍ର ପ୍ରଭୁଙ୍କ ନିର୍ଦ୍ଦେଶରେ ସେ ନିଜ ଶକ୍ତିର ଉପଯୋଗ କରନ୍ତି ।

ବର୍ଷ : ୧୧    ଫେବୃଆରୀ ୧୯୭୮    ଅଙ୍କ : ୮

ପ୍ରତି ସଂଖ୍ୟା : ଟ ୧.୨୫ : : ବାର୍ଷିକ ମୂଲ୍ୟ : ଟ ୧୫.୦୦




CHITRA



# ଅମର ବାଣୀ

ଅପରାଧୋ ନ ମେଽସ୍ତୀତି ନୈତଦ୍ ବିଶ୍ୱାସକାରଣମ୍ ।
ବିଦ୍ୟତେ ହି ନୃଶଂସେଭ୍ୟୋ ଭୟଂ ଗୁଣବତାମପି ॥ ॥ ୧ ॥

[ଅନ୍ୟ କାହାର ଅନିଷ୍ଟ କରିନାହିଁ ବୋଲି ମୁଁ ନିଜେ ନିରାପଦ, ଏକଥା ଭାବି ନିଶ୍ଚିନ୍ତ ରହିବା ଉଚିତ ନୁହେଁ । ଯିଏ ମହତ୍, ସିଏ ମଧ୍ୟ ଦୁଷ୍ଟ ପ୍ରତି ସତର୍କ ରହିବା ଆବଶ୍ୟକ ।]

ଅପ୍ରିୟଂ ପୁରୁଷଂ ଚାପି ପରଦ୍ରୋହଂ ପରସ୍ତ୍ରିୟମ୍ ।
ଅଧର୍ମମନୃତଂ ଚୈବ ଦୂରାତ୍ ପ୍ରାଜ୍ଞୋ ବିବର୍ଜୟେତ୍ ॥ ॥ ୨ ॥

[ଯିଏ ପ୍ରାଜ୍ଞ, ସିଏ ଅପ୍ରିୟ ଲୋକଠାରୁ, ଅନ୍ୟ ପ୍ରତି ଶତ୍ରୁତା ଆଚରଣ କରିବାରୁ, ଅନ୍ୟସ୍ତ୍ରୀ ଆସକ୍ତିରୁ ତଥା ଅଧର୍ମାଚରଣଠାରୁ ଦୂରେଇ ହୋଇ ରହିଥାଏ ।]

ଅର୍ଥନାଶଂ ମନସ୍ତାପଂ ଗୃହେ ଦୁଶ୍ଚରିତାନି ଚ ।
ବଞ୍ଚନଂ ଚାପମାନଂ ଚ ମତିମାନ୍ ନ ପ୍ରକାଶୟେତ୍ ॥ ॥ ୩ ॥

[ବୁଦ୍ଧିମାନ୍ ଲୋକେ ନିଜର ଅର୍ଥନାଶ, ମନସ୍ତାପ, ଗୃହକଳଙ୍କ, ନିଜେ ପ୍ରତାରିତ ବା ଅପମାନିତ ହୋଇଥିବା କଥାମାନ କହିବୁଲନ୍ତି ନାହିଁ ।]



# ପଞ୍ଚତନ୍ତ୍ର

(କାକୋଲୂକୀୟମ୍)

[ ୯ ]

ସାପ-ବ୍ରାହ୍ମଣ-ବୃତ୍ତାନ୍ତ ଶୁଣାଇସାରି ରକ୍ତାକ୍ଷ କହିଲା, "ସ୍ଥିରଜୀବୀକୁ ବଧ କରି ସମସ୍ତ ସନ୍ଦେହରୁ ମୁକ୍ତ ହୋଇ ଆମେ କାକମାନଙ୍କର ସେ ବରଗଛଟି ଅଧିକାର କରି ରହିବା ଭଲ ହେବ।"

ଏହାପରେ ଅରିମର୍ଦ୍ଦନ କ୍ରୂରାକ୍ଷର ମତ ପଚାରିଲେ। କ୍ରୂରାକ୍ଷ କହିଲା, "ରକ୍ତାକ୍ଷର ପରାମର୍ଶ ସହ ମୁଁ ଏକମତ ହୋଇପାରୁ ନାହିଁ। ଆମଠି ଶରଣ ପଶିଥିବା ଅସହାୟ କାଉକୁ ଆମେ ମାରିବା କିପରି ? ଆପଣମାନେ କ'ଣ ରାଜା ଶିବି ଶରଣାର୍ଥୀ ପ୍ରତି କି ପ୍ରକାର ଆଚରଣ କରିଥିଲେ ସେ କଥା ଜାଣି ନାହାନ୍ତି ?" ଅଥବା ପକ୍ଷୀ ଦମ୍ପତିଙ୍କର ଆଶ୍ରୟାର୍ଥୀ ବ୍ୟାଧ ପ୍ରତି ବ୍ୟବହାର କଥା ଜାଣିନାହାନ୍ତି ?"

"ନା। ସେ କଥା କ'ଣ କହିଲ !" ଅରିମର୍ଦ୍ଦନ କୌତୂହଳ ପ୍ରକାଶ କଲେ। ରକ୍ତାକ୍ଷ ସେଇଠୁ ଗପିଲା : ପ୍ରାଚୀନ କାଳର କଥା। ରାଜା ଶିବି ଥିଲେ ଭାରତର ସବୁ ନରପତିଙ୍କ ଉପରେ ସମ୍ରାଟ। ସେ ଥିଲେ ଯେପରି ଦୟାଳୁ, ସେହିପରି ଦାତା। ସେ ଥିଲେ ଅତ୍ୟନ୍ତ ଲୋକପ୍ରିୟ।

ଶିବିଙ୍କ ଦାତାପଣ କଥା ସ୍ୱର୍ଗରେ ପହଞ୍ଚିଲା। ଇନ୍ଦ୍ର ଚିନ୍ତା କଲେ : ସତରେ ଶିବିଙ୍କ ହୃଦୟ ଦୟାରେ ପୂରି ରହିଥିବା ଯୋଗୁ ସେ ଦାନ କରନ୍ତି, ନା ଖ୍ୟାତି ଅର୍ଜିବା ଅଭିଳାଷରେ ସେ ଦାନ କରନ୍ତି ?

ଇନ୍ଦ୍ର ଯମରାଜାଙ୍କୁ ନିଜ ସନ୍ଦେହ କଥା କହିଲେ। ଦୁହେଁ ପରାମର୍ଶ କରି ଶିବିଙ୍କୁ ପରୀକ୍ଷା କରିବା ନିମନ୍ତେ ଏକ ପନ୍ଥା ସ୍ଥିର କଲେ।

ଦିନେ ସକାଳେ ଶିବି ନିଜ ସଭାଗୃହରେ ବସିଛନ୍ତି, ଏତିକିବେଳେ କପୋତ ବେଶ ଧରି



ନ୍ୟାୟତଃ ସେ ମୋର । ଆଉ ବିଳମ୍ବ ନ କରି ତାକୁ ମୋତେ ଦେଇଦିଅନ୍ତୁ ।" ଛଞ୍ଚାଣ କହିଲା ।

"ଶରଣାର୍ଥୀକୁ ରକ୍ଷା କରିବା ବିବେକୀ ଲୋକର ପ୍ରଥମ କର୍ତ୍ତବ୍ୟ । ଆପଣଙ୍କ ଆହାର ସକାଶେ ମୁଁ ଅନ୍ୟ ସୁସ୍ୱାଦୁ ଖାଦ୍ୟର ବ୍ୟବସ୍ଥା କରୁଛି । ଆପଣ କପୋତକୁ ଛାଡ଼ିଦିଅନ୍ତୁ ।" ରାଜା ଶିବି କହିଲେ ।

"ଅନ୍ୟ କେହି ମାରିଥିବା ଜୀବର ମାଂସ ଛଞ୍ଚାଣ ସ୍ପର୍ଶ କରେ ନାହିଁ । ନିଜେ ମାରି ଖାଇବା ମୋର ପ୍ରକୃତି । ସେ ଯାହା ହେଉ, ଆପଣ ଯଦି ଏ କପୋତ ଓଜନର ମାଂସ ନିଜ ଦେହରୁ କାଟି ଦେବେ, ତେବେ ମୁଁ କପୋତକୁ ଛାଡ଼ିଦେବି ।" ଛଞ୍ଚାଣ ଉତ୍ତର ଦେଲା ।

"ବେଶ୍ କଥା । ମୁଁ ନିଜ ମାଂସ ଦେବି ।" ଏହା କହି ରାଜା ନିଜର ଜଣେ କର୍ମଚାରୀଙ୍କୁ ତରାଜୁ ନେଇ ଆସିବାକୁ ଆଦେଶ ଦେଲେ ।

ରାଜାଙ୍କ ସିଦ୍ଧାନ୍ତ ଶୁଣି ସଭାସଦ୍‌ମାନେ ହାହାକାର କରିଉଠିଲେ । ସେମାନେ କହିଲେ, "ମହାରାଜ ! ଇଏ ନିଶ୍ଚୟ ଛଞ୍ଚାଣ-ବେଶୀ କୌଣସି ରାକ୍ଷସ । ଆପଣଙ୍କ ପ୍ରାଣ ନେବାକୁ ଚାହୁଁଛି ।"

ରାଜା କିନ୍ତୁ କୌଣସି ଆପତ୍ତି ଶୁଣିଲେ ନାହିଁ । ତରାଜୁ ଆସିଲା । ଗୋଟିଏ ପଟରେ କପୋତ ବସିଲା । ଅନ୍ୟ ପଟରେ ରାଜା ନିଜ ଜଙ୍ଘରୁ ମାଂସ କାଟି ରଖିଲେ । କିନ୍ତୁ ଯେତେ ମାଂସ ରଖିଲେ ବି କପୋତର ଓଜନ ବେଶୀ ଦେଖାଗଲା । ଅଗତ୍ୟା ରାଜା ନିଜେ ଯାଇ ତରାଜୁରେ

ଇନ୍ଦ୍ର ପାର୍ଶ୍ୱବର୍ତ୍ତୀ ଉଦ୍ୟାନ ଭିତରୁ ଉଡ଼ିଆସି ଶିବିଙ୍କ ପାଖରେ ପଡ଼ିଗଲେ । ପଛେ ପଛେ ଛଞ୍ଚାଣ ବନି ଯମରାଜ ଦୌଡ଼ିଆସି ପହଞ୍ଚିଲେ । ଉପସ୍ଥିତ ହେବାର ଅଭିନୟ କରି କପୋତ ରାଜା ଶିବିଙ୍କ ପାଦ ତଳେ ଲୁଚିହୋଇ ବସିଲା ଓ କହିଲା, "ମହାରାଜ ! ମୁଁ ଆପଣଙ୍କ ଶରଣ ନେଲି । ମୋତେ ରକ୍ଷା କରନ୍ତୁ ।"

ଛଞ୍ଚାଣ କହିଲା, "ମହାରାଜ ! କପୋତକୁ ଛାଡ଼ିଦିଅନ୍ତୁ । ମୁଁ କ୍ଷୁଧିତ । ସେ ମୋ ଆହାର ।"

"ମହାରାଜ ! ଶରଣାର୍ଥୀକୁ ରକ୍ଷା କରିବା ଆପଣଙ୍କ ଧର୍ମ ।" କପୋତ କହିଲା ।

"ମୁଁ ଶୁଣିଛି, ଆପଣଙ୍କୁ ଯିଏ ଯାହା ଭିକ୍ଷା କରେ ଆପଣ ତାହା ଦିଅନ୍ତି । ଏ କ୍ଷେତ୍ରରେ ମୁଁ ମୋ ଆହାର ଏ କପୋତକୁ ମାଗୁଛି ।

ବସିଲେ । ତାଙ୍କର ସେ ଅପୂର୍ବ ତ୍ୟାଗରେ ତତ୍‌କ୍ଷଣାତ୍ ଆକାଶରୁ ପୁଷ୍ପବୃଷ୍ଟି ହେଲା । ଚତୁର୍ଦ୍ଦିଗରୁ ତାଙ୍କ ଜୟଧ୍ୱନି ଶୁଭିଲା ।

ପରେ ପରେ ଇନ୍ଦ୍ର ଓ ଯମରାଜା ନିଜ ନିଜ ରୂପ ଧାରଣ କରି ପ୍ରତ୍ୟକ୍ଷ ହେଲେ ଓ କହିଲେ, "ରାଜା ! ଆପଣଙ୍କ ତ୍ୟାଗର ପଟାନ୍ତର ନାହିଁ । ବାସ୍ତବିକ ଅନ୍ୟମାନଙ୍କ ପାଇଁ ଆପଣଙ୍କ ଦୟା ସ୍ୱତଃସ୍ଫୂର୍ତ୍ତ । ଆପଣ ସତ୍ୟର ମହାନ୍ ସାଧକ ।"

ଦୁଇ ଦେବତା ଅଦୃଶ୍ୟ ହୋଇଗଲେ ଓ ରାଜାଙ୍କ ଦେହର କ୍ଷତ ଭରିଯାଇଗଲା ।

## ଆତ୍ମୋତ୍ସର୍ଗକାରୀ ପକ୍ଷୀର କାହାଣୀ

ଜଣେ କୁଶଳୀ ବ୍ୟାଧ ଥରେ ଅରଣ୍ୟରେ ବସିଥିବା ବେଳେ ଅନ୍ଧକାର ଘୋଟିଆସିଲା ଓ ପ୍ରବଳ ବର୍ଷା ହେଲା । ବ୍ୟାଧ ଓଦା ହୋଇ ଗୋଟାଏ ଗଛ ତଳେ ଆଶ୍ରୟ ନେଲା ।

ସେ ଗଛରେ ଯୋଡ଼ାଏ ପକ୍ଷୀ ରହୁଥିଲେ । ପକ୍ଷିଣୀ ବାହାରକୁ ଯାଇଥିଲା । ପକ୍ଷୀଟି ତା' ପାଇଁ ଚିନ୍ତିତ ଥିବା ବେଳେ ପକ୍ଷିଣୀ ଫେରି ଆସିଲା । ବ୍ୟାଧ ଶୀତରେ ଥରୁଥିବାର ଦେଖି ଦୁଇପକ୍ଷୀ ତା' ପ୍ରତି ଦୟାପରବଶ ହେଲେ । ଗଛ କୋଟରରେ ପୂର୍ବରୁ ସଂଗୃହୀତ ହୋଇ ରହିଥିବା ଶୁଖିଲା ଘାସମାନ ଆଣି ସେ ଦୁହେଁ ବ୍ୟାଧ ଆଗରେ ଜମା କଲେ । କୌଶଳ କରି ନିଆଁ ମଧ୍ୟ ଆଣିପାରିଲେ । ଶୁଖିଲା ଘାସ ନିଆଁରେ ଜଳିଉଠିଲା ଓ ବ୍ୟାଧ ସେଥିରେ ସେକିହୋଇ ଆରାମ ପାଇଲା ।

ବ୍ୟାଧ ସହ କଥାବାର୍ତ୍ତାରୁ ତାକୁ ଭୋକ ଲାଗୁଛି ବୋଲି ବୁଝିପାରି ପକ୍ଷୀ ତାକୁ କହିଲା, "ମୋତେ ଖାଇ କ୍ଷୁନ୍ନିବୃତ୍ତି କର ।" ଏହା କହି ସେ ନିଆଁରେ ଝାସ ଦେଲା । ତା'ର ଆତ୍ମତ୍ୟାଗ ଦେଖି ପକ୍ଷିଣୀ ମଧ୍ୟ ନିଆଁ ଭିତରକୁ ଡେଇଁପଡ଼ିଲା ।

ପକ୍ଷୀ ଯୋଡ଼ିକଙ୍କର ସେ ତ୍ୟାଗରେ ବ୍ୟାଧ ଚମତ୍କୃତ ହେଲା । ସେମାନଙ୍କ ମାଂସ ଖାଇବା ତ ଦୂରର କଥା, ବ୍ୟାଧ ସେହି ନିଆଁ ଅରଣ୍ୟର ଗୋଟିଏ ଶୁଖିଲା ଅଂଶରେ ଲଗାଇଦେଇ ନିଜେ ସେଥିରେ ଝାସ ଦେଲା ।



# ତରଙ୍ଗ-ସୃଜିତ ଗୁମ୍ଫା

ଏହି ଚିତ୍ର-ଦର୍ଶିତ ଗୁମ୍ଫାଟି ଆଲ୍ୟୁସିଆନ୍ ଦ୍ୱୀପପୁଞ୍ଜର ଗୋଟିଏ ଟାପୁରେ ଅବସ୍ଥିତ । ବହୁ ବହୁ କାଳ ତଳେ ଏ ପର୍ବତରୁ ଅଗ୍ନ୍ୟୁଦ୍‌ଗିରଣ ହୋଇ ୭୦ ଫୁଟ ବହଳର ଲାଭା ଜମା ହୋଇଥିଲା । କାଳକ୍ରମେ ତାହା ଶୀତଳ ହୋଇ ତହିଁରେ ପଟାସ ଉତ୍ପନ୍ନ ହେଲା । ତା'ପରେ ଏକ ବିଶାଳ ତରଙ୍ଗ ଧକ୍‌କାରେ ସେଥିରୁ ଏକ ଅଂଶ ଧସିପଡ଼ି ସମୁଦ୍ର ଗର୍ଭରେ ଲୀନ ହେଲା । ଫଳରେ ସୃଷ୍ଟି ହେଲା ଏ ଗୁମ୍ଫା । ଏହାର ଗଭୀରତା ୭୫ ଫୁଟ ।






# ମାୟା ସରୋବର

[ ୨୪ ]

[ହଂସରଥକୁ ଆକ୍ରମଣ କରିଥିବା ଜଳରାକ୍ଷସମାନଙ୍କୁ ଜୟଶୀଳ ଓ ତାଙ୍କ ଅନୁଚରମାନେ ହଟାଇ ଦେଲେ । ଅରଣ୍ୟର ଯେଉଁ ଅଞ୍ଚଳରେ ମାୟାସରୋବରେଶ୍ୱର ଓ କାଞ୍ଚନମାଳା ରଥରୁ ପଡ଼ି-ଯାଇଥିଲେ, ସେହି ଅଞ୍ଚଳରେ ଧଳାଧୂଆଁ ଉଠୁଥିବାର ଦେଖି ସଭିଏଁ ସେହି ଆଡ଼କୁ ଗଲେ । ତା'ପରେ—]

ଶୂନ୍ୟରେ ହଂସରଥ ଓଲଟି ଯିବାରୁ ସେଥିରୁ ମାୟା-ସରୋବରେଶ୍ୱର, କାଞ୍ଚନମାଳା ଓ ସାରଥୀ—ତିନିଜଣ ଖସି ପଡ଼ିଥିଲେ ସତ, କିନ୍ତୁ ସେମାନେ ପଡ଼ିଥିଲେ ଭିନ୍ନ ଭିନ୍ନ ସ୍ଥାନରେ ।

ବଣର ଯେଉଁ ଅଂଶରେ ମାୟା-ସରୋବରେ-ଶ୍ୱର ଯାଇ ପଡ଼ିଥିଲେ, ସେ ଅଞ୍ଚଳରେ ନର-ଭକ୍ଷୀ ଲୋକେ ବସବାସ କରୁଥିଲେ । ସପ୍ତାହେ ହେଲା ସେମାନେ ନିଜ ଅଞ୍ଚଳରେ ଶିକାର ପାଇଁ କୌଣସି ଜୀବଜନ୍ତୁ ପାଇ ନ ଥିଲେ । ତା'ର କାରଣ, ଶିକାର- ସନ୍ଧାନରେ ଦୂରରୁ ଆସି ଗୋଟାଏ ଶିକାରୀ ଦଳ ସେଠାରେ ପହଞ୍ଚି ସବୁ ପଶୁପକ୍ଷୀ ମାରି ଖାଇଯାଉଥିଲେ । ସେମାନଙ୍କ ପାଟିଗୋଳରେ ପଶୁପକ୍ଷୀମାନେ ଖଣ୍ଡିମଣ୍ଡଳ ଛାଡ଼ି ଦୂରକୁ ପଳାଇ ଯାଉଥିଲେ ।



ନରଭକ୍ଷୀ ବାସିନ୍ଦାମାନଙ୍କ ସର୍ଦ୍ଦାରର ନାମ ଶେରସିଂହ । ଶିକାର ଅଭାବରେ ତା'ର ଜାତି-ଭାଇମାନଙ୍କ ଭିତରୁ ଥୋକେ ସେ ଅଞ୍ଚଳ ଛାଡ଼ି ଚାଲିଯିବାକୁ ବସିଥିଲେ । କିନ୍ତୁ ପିତୃପୁରୁଷଙ୍କ ନିର୍ବାଚିତ ବାସସ୍ଥାନ ଛାଡ଼ି ଚାଲିଯିବା ଠିକ୍ ନୁହେଁ ବୋଲି ଶେରସିଂହର ମନେ ହେଉଥିଲା । ବଣ ଭିତରେ ଗୋଟାଏ ପୁରୁଣା ବରଗଛ ତଳେ ଥିଲେ ସେମାନଙ୍କ ଜାତିର ଆରାଧ୍ୟ ଦେବତା । ବର୍ଷକରେ ଥରେ ତାଙ୍କ ଆଗରେ ନରବଳି ଦେବା ଥିଲା ବିଧି । ସମସ୍ତେ ପଳାଇଲେ ତାଙ୍କ ପୂଜା କରିବ କିଏ ? ତାଙ୍କ ପୂଜା ନ କଲେ ଜାତିର ସର୍ବନାଶ ସୁନିଶ୍ଚିତ ।

ଶେରସିଂହ ସ୍ଥିର କଲା, ଯେମିତି ହେଲେ ବି ଲୋକଙ୍କୁ ପଳାଇଯିବାରୁ ନିବୃତ୍ତ କରିବାକୁ ପଡ଼ିବ । ସେ ଦିଗରେ ଆବଶ୍ୟକୀୟ ଶକ୍ତି ଓ ଉପାୟର ସନ୍ଧାନ ପାଇବା ପାଇଁ ସେ ଦିଅଁଙ୍କୁ ଆରାଧନା କରିବା ନିମନ୍ତେ ବରଗଛ ଆଡ଼କୁ ଯାଉଥିଲା ।

ବରଗଛ ତଳର ମନ୍ଦିରଟି ଥିଲା ଅତି ପୁରୁଣା । କବାଟ ନ ଥିଲା । ବର୍ଷାବେଳେ ଥରେ ଥରେ ଭୟଙ୍କର ଜୀବଜନ୍ତୁ ତହିଁ ଭିତରେ ଆଶ୍ରୟ ନେଉଥିଲେ ।

ସେ ଦିନ ସୂର୍ଯ୍ୟୋଦୟ ବେଳେ ଶେରସିଂହ ମନ୍ଦିର ପାଖରେ ପହଞ୍ଚି ଦେଖିଲା ଏକ ରୋମ-ହର୍ଷକ ଦୃଶ୍ୟ । ଗୋଟାଏ ପ୍ରକାଣ୍ଡ ଅଜଗର ଗୋଟାଏ ହେଣ୍ଟାକୁ ଜାବୁଡ଼ି ଧରିଥାଏ । କିନ୍ତୁ ଅଜଗରର ମୁହଁକୁ ହେଣ୍ଟା ଗିଳିବାକୁ ଚେଷ୍ଟା କରୁଥାଏ । ଉଭୟେ ଉଭୟଙ୍କ କବଳରେ ।

ସେ ଦୃଶ୍ୟ ଦେଖି ପ୍ରଥମେ ଶେରସିଂହ ସେଠାରୁ ପଳାଇଯିବାକୁ ବସିଥିଲା । କିନ୍ତୁ ହିମ୍ମତ ବାନ୍ଧି ସେ ନିଜ ଦିଅଁଙ୍କୁ ପ୍ରଣାମ କଲା ଓ କହିଲା, "ହେ ଦେବତା ! ଏ ତୁମର କି ଧରଣର ଲୀଳା ? ଆମେ ତୁମ ଭକ୍ତ । ଅଥଚ ସପ୍ତାହେ ହେଲା ଆମକୁ ଶିକାର ମିଳୁ ନାହିଁ । ଥୋକେ ପଳାଇବାକୁ ବସିଲେଣି । କାହିଁକି ଆମ ଉପରେ ତୁମ କୃପା ନାହିଁ ? ବର୍ତ୍ତମାନ ଆମେ କରିବୁ କ'ଣ ?"



ଅଳ୍ପ ସମୟ ଉତ୍ତାରୁ ସେ ଭଙ୍ଗା ଦେଉଳ ଭିତରୁ ଗୋଟାଏ ଜଙ୍ଗଲୀ ବିଲେଇ ବାହାରିପଡ଼ି "ମ୍ୟାଉଁ ! ମ୍ୟାଉଁ !" ବୋଲି ଖୁବ୍ ଜୋର୍‌ରେ ରଡ଼ି କଲା ।

"ଏ ବିଲେଇ ନିଶ୍ଚୟ କିଛି କହୁଛି । କିନ୍ତୁ ଏହାର ଅର୍ଥ ପୂଜକ ଗଣାଗୁରି ଛଡ଼ା ଆଉ କିଏ ବୁଝିବ ?" ଏହା କହି ଶେରସିଂହ ନିଜ ବସ୍ତି ଆଡ଼କୁ ଦୌଡ଼ିବାକୁ ଲାଗିଲା ।

ସେତେବେଳେ ଅଦୂରରେ ବଣ ଭିତରେ ଥିବା ଖଣ୍ଡିଏ ଗ୍ରେଟ ପଡ଼ିଆ ଉପରେ ବସି ନର-ଭକ୍ଷୀ ସମ୍ପ୍ରଦାୟର ଲୋକେ ବଣରୁ ସଂଗୃହିତ କିଛି ଚେରମୂଳ ଖାଇ କ୍ଷୁଧା ନିବାରଣ କରୁଥିଲେ ଓ ଦୂରକୁ ଚାଲିଯିବା କଥା ଆଲୋଚନା କରୁଥିଲେ ।

ଶେରସିଂହ ସେଠାରେ ପହଞ୍ଚି ପାଟି କରି କହିଲା, "ଆମ ଦେବତା ଆମ ଉପରେ କୃପା କଲା ପରି ମନେ ହେଉଛି । ଆମ ପୂଜକ ଗଣା-ଗୁରି ଗଲା କୁଆଡ଼େ ?"

ନରଭକ୍ଷୀମାନେ ସମସ୍ତେ ଏକାବେଳକେ ସର୍ଦ୍ଦାର ଆଡ଼କୁ ଅନାଇଲେ । ସେତିକିବେଳେ ଅଦୂରରେ ଦେଖାଗଲେ ଦଳେ ହରିଣ ଓ ଦଳେ ଘୁଷୁରି । ନରଭକ୍ଷୀଙ୍କ ଭିତରୁ ଦଳେ ଉତ୍ସାହ-ଭରେ ପଚାରିଲେ, "ସର୍ଦ୍ଦାରଜୀ ! ଦେବତା ପ୍ରକୃତରେ କହିଲେ କ'ଣ ? ଏ ହରିଣ ଓ ଘୁଷୁରି ଦଳ କ'ଣ ଦେବତା ଆମରି ପାଇଁ ପଠାଇଛନ୍ତି ? ଆମେ ତେବେ ଅସ୍ତ୍ରଶସ୍ତ୍ର ନେଇ ଆସିବା ? କୁହନ୍ତୁ, ଭୋକ ଆଉ ସମ୍ଭାଳି ହେଉ ନାହିଁ ।"

ଶେରସିଂହ ଇତସ୍ତତଃ ଅନାଇ ସେ ପର୍ଯ୍ୟନ୍ତ ଗଣାଗୁରିଙ୍କୁ ଖୋଜୁଥାଏ । ନ ପାଇ ବିରକ୍ତ କଣ୍ଠରେ କହିଲା, "ଆବେ ମୂର୍ଖଦଳ ! ମୁଁ ପଚାରୁଛି କ'ଣ, ତୁମେମାନେ କହୁଛ କ'ଣ ? ଦେବତାଙ୍କ ମନ୍ଦିର ଆଗରେ ମୁଁ ଯେଉଁ ଦୃଶ୍ୟ ଦେଖିଲି, ଏକମାତ୍ର ପୂଜକ ଗଣାଗୁରିହିଁ ତା'ର ବ୍ୟାଖ୍ୟା ଦେଇପାରିବେ । ସେ କାହାନ୍ତି ? ତାଙ୍କୁ ଶୀଘ୍ର ଡାକଆଣ ।"



ଗଣାଗୃଖି ସେତେବେଳେ ସ୍ୱଳ୍ପ ଦୂରବର୍ତ୍ତୀ ଗୋଟାଏ ଗଛମୂଳରେ ପଡ଼ି ଭୋକରେ ଛଟପଟ ହେଉଥିଲା । ଶେରସିଂହ ତା' ସନ୍ଧାନ ପାଇ ସେଠାରେ ପହଞ୍ଚିଲା ଓ ମନ୍ଦିର ଆଗରେ ସେ ଦେଖିଥିବା ଦୃଶ୍ୟ କଥା ଶୁଣାଇ କହିଲା, "ଗଣା-ଗୃଖି ! ଏ ଦୃଶ୍ୟର ରହସ୍ୟ କ'ଣ ? ଦେବତା ଆମ ଉପରେ କୃପାପରବଶ ଏବଂ ଆମକୁ ଶୀଘ୍ର ପ୍ରଚୁର ଶିକାର ମିଳିବେ, ଏହାର ଅର୍ଥ ଏଇଆ ନୁହେଁ ତ ?"

ଗଣାଗୃଖି ସର୍ଦ୍ଦାରର କଥା ଶୁଣି ବିଶେଷ ଉତ୍ସାହିତ ହେଲାପରି ଲାଗିଲା ନାହିଁ । ସେ ସେମିତି ଯନ୍ତ୍ରଣାକାତର ମୁହଁରେ କହିଲା, "ଦେବତାଙ୍କ ପୂଜକଗିରି କରି ମୋ ବାଳ ପାଚିଲାଣି । ଦେବତା କେବେ ବି କୌଣସି କଥା ସ୍ପଷ୍ଟ କୁହନ୍ତି ନାହିଁ । ମୋର ପରାମର୍ଶ ହେଲା, ଶିକାର ଉପରେ ନିର୍ଭର ନ କରି ଅନ୍ୟାନ୍ୟ ବଣୁଆ ଗୋଷ୍ଠିର ଲୋକଙ୍କ ପରି ଆମ ଲୋକେ ବି ଯାହା ପାଇବେ ତାହା ଖାଇ ଉଦର ପୂର୍ତ୍ତି କରନ୍ତୁ ।"

ବୁଢ଼ା ଗଣାଗୃଖିର କଥା ଶେଷ ହେବା ମାତ୍ରେ ଶେରସିଂହ ତା' କଡ଼ରେ ଠିଆ ହୋଇଥିବା ଜଣେ ଯୁବକ ହାତରୁ ଲାଠିଟାଏ ଛଡ଼ାଇ ଆଣି ପାଟିକରି ଧମକ ଦେଲା, "ବଦ୍‌ମାସ୍ ! ଆମ ଜାତିର ଲୋକେ ମାଂସ ଛଡ଼ା ଆଉ କିଛି ଖାଇବା ନିଷେଧ ବୋଲି ତୁ ଭୁଲିଗଲୁଣି ପରା !" ଏତକ କହି ସେ ଗଣାଗୃଖି ପିଠିରେ କଷିଦେଲା ଦୁଇ ପାହାର ।

ଆଘାତ ପାଇ ଗଣାଗୃଖି ଡେଇଁପଡ଼ି ଠିଆ ହେଲା ଓ ବାଳ ଝାଡ଼ି କହିଲା "ଶେରସିଂହ ! ତୋ ମାଡ଼ ମୋ ଭିତରେ ଔଷଧ ଭଳି କାମ କରିଛି । ମୋର ଭୋକ ଦୂର ହୋଇଯାଇଛି । ଛାତି ଭିତରେ ଉତ୍ସାହ ଉଛୁଳି ଉଠୁଛି ।" ଏହା କହି ସେ କୁଦିପଡ଼ି ମାଙ୍କଡ଼ ଭଳି ଗଛଡାଳ ଧରି ଝୁଲିବାକୁ ଲାଗିଲା ।

ଶେରସିଂହର ନିର୍ଦ୍ଦେଶରେ ଦୁଇ ତିନିଜଣ ଯୁବକ ଗଣାଗୃଖିର ଗୋଡ଼ ଜାବୁଡ଼ି ଧରି ତାକୁ ତଳକୁ ଟାଣିବାକୁ ଲାଗିଲେ । ସେ ପଡ଼ିଯିବା

ବେଳକୁ ତାକୁ ଧରି ସିଧା ଠିଆ କରାଇଦେଲେ । ତା'ପରେ ଶେରସିଂହ ମନ୍ଦିର ଆଗରେ ଘଟିଥିବା ଘଟଣାର ବିସ୍ତୃତ ବିବରଣୀ ଗଣାଗୁଣିକୁ ଶୁଣାଇଲେ ।

ଗଣାଗୁଣି ସବୁ କଥା ମନଦେଇ ଶୁଣିଲା । ତା'ପରେ କିଛି ସମୟ ଆକାଶକୁ ଚାହିଁରହି ହଠାତ୍ ମେଞ୍ଚାଏ ମାଟି ଉଠାଇନେଇ ସମସ୍ତଙ୍କ ଉପରେ ତାହା ବିଞ୍ଚିଦେଇ କହିଲା, "ଏ ପଡ଼ିଆ ଭିତରେ ନିଆଁ ଜାଳି କୁଣ୍ଡରେ ପାଣି ଗରମ କର । କିଛି ଲୋକ ଯାଇ ମନ୍ଦିର ଆଗରେ ଲଢ଼େଇ କରୁଥିବା ଅଜଗର ଓ ହେନ୍ତାଙ୍କୁ ତଥା ବିଲେଇଟିକୁ ଧରି ଏଠାକୁ ନେଇଆସ ।"

"ସେ ବଣୁଆ ବିଲେଇ ଏ ପର୍ଯ୍ୟନ୍ତ ସେ ଭଙ୍ଗା ଦେଉଳ ପାଖରେ ଆମକୁ ଅପେକ୍ଷା କରି ବସିଥିବ, ସେ କଥା କାହିଁ ମୋର ବିଶ୍ୱାସ ହେଉ ନାହିଁ । ହେନ୍ତା ଓ ଅଜଗର ଉଭୟେ ବା ଗୋଟାଏ ମରିସାରିଥିବା ଅସମ୍ଭବ ନୁହେଁ । ଯାହା ହେଉ, ଲୋକେ ଯାଇ ଦେଖନ୍ତୁ ।" ଶେରସିଂହ କହିଲା ।

"ଯଦି ବିଲେଇ ସେଠାରେ ନ ଥିବ, ତେବେ ସେ ଯେଉଁ ପଥର ଖଣ୍ଡିକ ଉପରେ ବସିଥିଲା, ସେ ଖଣ୍ଡିକ ଏଠାକୁ ଅଣାହେବା ଦରକାର । ସେ ଖଣ୍ଡିକ ମଧ୍ୟ ପାଣିକୁଣ୍ଡରେ ପଡ଼ିବା ଆବଶ୍ୟକ ।" ବୁଢ଼ା ଗଣାଗୁଣି ଆଖି ଲାଲ କରି କହିଲା ।



"ଆଚ୍ଛା, ଦେବତା ସେ ହେନ୍ତା ଓ ଅଜଗରର ଲଢ଼େଇ ଦେଖାଇ କ'ଣ ବୁଝାଇବାକୁ ଚାହୁଁଛନ୍ତି ? ଆମକୁ ଶୀଘ୍ର ଶିକାର ପ୍ରବଂଭଳ ମିଳିବେ, ଏଇଆ ?" ଶେରସିଂହ ଟିକିଏ ନରମ୍ କଣ୍ଠରେ ପଚାରିଲା ।

ହଠାତ୍ ଗଣାଗୁଣି ନାଚିଉଠିଲା । ଯେମିତି ତା' ଦେହରେ ଦେବତା ସବାର୍ ହୋଇଛନ୍ତି, ସେମିତି ଢଙ୍ଗ ଦେଖାଇ କହିଲା, "ମୁଁ କିଏ ? ନିଜେ ଦେବତା । ମୋ ଦୟା ହେଲେ ଖାଲି ଜନ୍ତୁ ଜାନୁଆର୍ କାହିଁକି, ତୁମକୁ ମଣିଷ ବି ମିଳିଯିବ । ଉଠ । ଚାଲ ।"

ଲୋକେ ପଡ଼ିଆ ଭିତରେ ଗାତ ଖୋଳି



କିନ୍ତୁ ମାୟା-ସରୋବରେଶ୍ୱର ନିଜେ, ରାଜା କନକାକ୍ଷଙ୍କ କନ୍ୟା କାଞ୍ଚନମାଳା ଓ ସାରଥୀ ତଳକୁ ଖସି ଆସିଲେ ।

ପବନ ଧକ୍‌କାରେ ତିନିହେଁ ଅଲଗା ହୋଇ-ପଡ଼ିବାକୁ ଲାଗିଲେ । ମାୟା-ସରୋବରେଶ୍ୱର ଖସୁଥିବା ଅବସ୍ଥାରେ ଗଣାଗୃଧ୍ରର ଆଖିରେ ପଡ଼ିଲେ ।

ଗଣାଗୃଧ୍ର ପାଟିକରି କହିଲା, "ଦେଖ, ଦେଖ, ଆମକୁ ଭୋକରୁ ରକ୍ଷା କରିବା ନିମନ୍ତେ ଆମ ଦିଅଁ ମଣିଷକୁ ପଠାଉଛନ୍ତି । ଏ କୁଣ୍ଡରେ ମଣିଷ, ହେନ୍ତା, ·ଅଜଗର, ବିଲେଇ ଏକାଠି ସମସ୍ତଙ୍କୁ ସିଝାଇ ପ୍ରଥମେ ସେମାନଙ୍କ ମାଂସ ଦିଅଁଙ୍କୁ ପରଷିବାକୁ ହେବ । ତାହାହେଲେ ଆମ ପାଇଁ ଆଉ ଜନ୍ତୁ ଜାନୁଆର୍ ଅଭାବ ପଡ଼ିବେ ନାହିଁ ।"

ନରଭକ୍ଷୀମାନେ ମୁଣ୍ଡ ଟେକି ଆକାଶକୁ ଅନାଇ ଉତ୍ସାହରେ ତାଳି ବଜାଇବାକୁ ଲାଗିଲେ । ମାୟା-ସରୋବରେଶ୍ୱର ରଥରୁ ଖସି ପଡ଼ିବା ଦୁର୍ଭାଗ୍ୟର ବିଷୟ ନିଶ୍ଚୟ, କିନ୍ତୁ ସୌଭାଗ୍ୟ ବଶତଃ ସେ ମାଟିରେ ନ ପଡ଼ି କୁଣ୍ଡ ଭିତରେ ପାଣିରେ ପଡ଼ିଲେ । ସେ ଥରେ ବୁଡ଼ି ଖାଇ ତା' ପରେ ଉଠି କୁଣ୍ଡ ଭିତରୁ ଚତୁର୍ଦ୍ଦିଗସ୍ଥ ନରଭକ୍ଷୀ-ମାନଙ୍କୁ ଦେଖି ଶଙ୍କିଗଲେ । ବୁଢ଼ା ଗଣାଗୃଧ୍ର ଅଳ୍ପ ହସି କୁଣ୍ଡ ଆଡ଼କୁ ଅଗ୍ରସର ହୋଇ କହିଲା, "ଦେବତା ଯେତେବେଳେ ପଠାଇଛନ୍ତି,

ତିନିହିଁରେ ଶୁଖିଲା ତାଳପତ୍ର ଭର୍ତ୍ତି କରି ନିଆଁ ଲଗାଇ ତହିଁ ଉପରେ ପାଣିକୁଣ୍ଡ ଥୋଇଲେ । ଉତ୍ସାହ ଭରେ ଏଣେ ତେଣେ ଦୌଡ଼ାଦୌଡ଼ି କରି କେତେଜଣ ଯୁବକ ଅଧିକା ଶୁଖିଲା ତାଳ-ପତ୍ର ସଂଗ୍ରହ କରି ନିଆଁରେ ପକାଇଲେ । ଗୁହୁଁ ଗୁହୁଁ ଆକାଶକୁ ଉଠିଲା ଧଳା ଧୂଆଁ ।

ସେତିକବେଳେ ଆକାଶମାର୍ଗରେ ଯାଉଥିବା ମାୟା ସରୋବରେଶ୍ୱରର ହଂସରଥ ଉପରେ ଗୃଧ୍ର ଚଢ଼ଉ କରିବାରୁ ହଂସମାନେ ଚମକିଗଲେ ଓ ରଥ ଓଲଟିପଡ଼ିଲା ।

ମାୟା-ସରୋବରେଶ୍ୱରର ଦେହରକ୍ଷୀ କୌ-ଣସି ମତେ ରଥକୁ ଆବୋର ରହି ବର୍ତ୍ତିଗଲା ।

ସେ ବାଛି ମୋଟା ଲୋକଟାଏ ପଠାଇଛନ୍ତି । ଆମକୁ ପରିଶ୍ରମରୁ ରକ୍ଷା କରିବା ନିମନ୍ତେ ସିଧା କୁଣ୍ଡ ଭିତରେ ଆଣି ଲୋକଟିକୁ ପକାଇଛନ୍ତି ।"

ଗଣାଗୃଷ୍ଟିର ସେ ଉଲ୍ଲାସ ଦେଖି ଓ କଥା ଶୁଣି ମାୟା-ସରୋବରେଶ୍ୱର ବୁଝିଲେ, ସେ ଯେ କେବଳ ଜଙ୍ଗଲି ଲୋକଙ୍କ ହାବୁଡ଼ରେ ପଡ଼ିଛନ୍ତି ସେତିକି ନୁହେଁ, ପଡ଼ିଛନ୍ତି ନରଖାଦକମାନଙ୍କ ଭିତରେ । ତାଙ୍କ ଭଳି ଏଡ଼େ ପ୍ରଭାବଶାଳୀ ଲୋକଙ୍କ ଭାଗ୍ୟରେ ପୁଣି ଏଭଳି ଦୁର୍ଯୋଗ ଥିଲା ! ସେ ଏ କଥା ଭାବିଲା ବେଳକୁ ଧୀରେ ଧୀରେ କୁଣ୍ଡର ପାଣି ଗରମ ହୋଇ ଆସୁଥାଏ ।




ମାୟା-ସରୋବରେଶ୍ୱର ଯନ୍ତ୍ରଣାରେ ଚିତ୍କାର କରି କୁଣ୍ଡରୁ ବାହାରି ଆସିବାକୁ ଉଦ୍ୟତ ହୁଅନ୍ତେ ବୁଢ଼ା ଗଣାଗୃଷ୍ଟି ଖଣ୍ଡିଏ ଜଳନ୍ତା କାଠ ଧରି ତାଙ୍କ ଆଡ଼କୁ ଲକ୍ଷ୍ୟ କରି ପାଟି କରି କହିଲା, "ଆରେ ଆମ ଦେବତା-ପ୍ରେରିତ ଆହାର ! କୁଣ୍ଡ ଜଳ ଗରମ ହେବାରୁ ବାହାରକୁ ପଳାଇବାକୁ ଚେଷ୍ଟା କରୁଛୁ କ'ଣ ? ତୁ ତ ପୁଣି ଆମ ଆହାର ହେବୁ !"

ମାୟା-ସରୋବରେଶ୍ୱର ବୁଝିଲେ ଯେ ତାଙ୍କ ମୃତ୍ୟୁ ନିଶ୍ଚିତ । ଫୁଟନ୍ତା ପାଣିରେ ଛଟପଟ ହୋଇ ମରିବା ଅପେକ୍ଷା କୁଣ୍ଡରୁ ବାହାରି ଆସି ମରିବା ବରଂ ଭଲ ହେବ ବୋଲି ସେ ଭାବିଲେ । ସେ ବାଗରେ ସେ ଏକ ଉପାୟ ସ୍ଥିର କଲେ ଓ ଯେପରି କୌଣସି ଗୋପନୀୟ କଥା କହିବାକୁ ଯାଉଛନ୍ତି, ସେହିପରି ଭାବରେ କଣ୍ଠସ୍ୱର ଧୀର କରି ପଚାରିଲେ, "ତୁମେ ଏମାନଙ୍କ ପୂଜକ କି ? ଯଦି ହୋଇଥିବ, ତେବେ ତୁମକୁହିଁ ରହସ୍ୟଟି ବତାଇବା କଥା । ତୁମ ଦେବତା ମୋ ସହ ଆହୁରି ଦୁଇତିନିଜଣଙ୍କୁ ଶୂନ୍ୟରୁ ପ୍ରେରଣ କରିଛନ୍ତି ।"

ଗଣାଗୃଷ୍ଟି ବିସ୍ମିତ ହୋଇ ପଚାରିଲା, "ସେମାନେ ତେବେ ଗଲେ କୁଆଡ଼େ ?"

"ମନେହୁଏ ରାସ୍ତା ଭୁଲି ସେମାନେ ଆଉ କୁଆଡ଼େ ଚାଲିଗଲେ । ଚାଲ, ସେମାନଙ୍କୁ ଖୋଜି ବାହାର କରିବା ।" ମାୟା-ସରୋବରେଶ୍ୱର

ଉତ୍କଣ୍ଠିତ ଭାବରେ କହିଲେ ।

ଗଣାଚାର୍ଯ୍ୟ ଏ କଥା ବିଶ୍ୱାସ କଲା । ସେ ତତ୍‌କ୍ଷଣାତ୍ ପାଣିକୁଣ୍ଡ ଭିତରୁ ସରୋବରେଶ୍ୱରଙ୍କୁ ବାହାର କରି ଆଣିଲା । ସେତେବେଳେ ମନ୍ଦିରକୁ ଯାଇଥିବା ଶେରସିଂହ ଉଦ୍ଦେଶ୍ୟରେ ସବୁ ଖବର ପଠାଇଦେଇ ସେ ସରୋବରେଶ୍ୱରଙ୍କୁ ସାଥିରେ ଧରି ବଣ ଭିତରକୁ ଚାଲିଲା ।

ସନ୍ଧ୍ୟାଯାଏ ସେମାନେ ଜଙ୍ଗଲ ବ୍ୟାପି ତଲାସ ଚଳାଇଲେ । ଅବଶେଷରେ ଗୋଟାଏ ଗଛ ତଳେ ସାରଥି ବ୍ୟବହାର କରୁଥିବା ଚାବୁକଟି ପଡ଼ିଥିବାର ସରୋବରେଶ୍ୱର ଦେଖିଲେ ।

“ମୋ ସାରଥି ଓ କାଞ୍ଚନମାଳା ଏହି ଗଛ ଉପରେ ପଡ଼ିଥିବେ । ବିଚରାମାନେ ବଞ୍ଚିଛନ୍ତି କି ନାହିଁ କେ ଜାଣେ ! ସେମାନଙ୍କୁ ରକ୍ଷା କରିବାକୁ ହେବ ।” ମନେ ମନେ ଏଇଆ କହି ସରୋବରେଶ୍ୱର ଉପରକୁ ଅନାଇଲେ । ଅବଶ୍ୟ ଗଛରେ କେହି ନ ଥିଲେ । କିନ୍ତୁ ଦୂରରୁ ହଂସରଥ ଉଡ଼ି ଆସୁଥିବାର ସେ ଦେଖିପାରିଲେ ।

ଧଳା ଧୂଆଁ ଲକ୍ଷ୍ୟ କରି ତନ୍ତ୍ର ସାଧକ ଓ ମକରକେତୁ ମଧ୍ୟ ସେହି ଅଞ୍ଚଳକୁ ଆସୁଥିଲେ । ନରବାନର ଉପରେ ଥାଇ ତନ୍ତ୍ରସାଧକ ଥରେ “ଜୟ ମହାକାଳ !” ବୋଲି ହୁଙ୍କାର ଛାଡ଼ିଲେ । ସେ ଚିତ୍କାର ଶୁଣି ମାୟା-ସରୋବରେଶ୍ୱର ତଥା ଅନ୍ୟମାନେ ଥରିଉଠିଲେ ।

ନିଜ ହଂସରଥ ଉଡ଼ି ଆସୁଥିବାର ଦେଖି ସରୋବରେଶ୍ୱର ପ୍ରଥମେ ଆନନ୍ଦିତ ହୋଇଉଠିଥିଲେ । କିନ୍ତୁ ତନ୍ତ୍ରସାଧକଙ୍କ ରଡ଼ି ଶୁଣି ସେ ଚମକିଉଠିଲେ । ସେ ଚାରିଦିଗକୁ ଅନାଇଲେ । କିନ୍ତୁ ଘଞ୍ଚ ଅରଣ୍ୟ ଛଡ଼ା ଆଉ କିଛି ତାଙ୍କ ଆଖିରେ ପଡ଼ିଲା ନାହିଁ ।

ଉପରୁ କ୍ରମେ କ୍ରମେ ହଂସରଥ ନିକଟବର୍ତ୍ତୀ ହୋଇଆସୁଥାଏ । ଏଣେ ଅରଣ୍ୟ ମଧ୍ୟରୁ ଶୁଭୁଥାଏ ଗଛଲତା ଭାଙ୍ଗି କେହି ପ୍ରବଳ ଜୀବ ଆଗକୁ ମାଡ଼ି ଆସୁଥିବାର ଶବ୍ଦ । (କ୍ରମଶଃ)





# ଋଣ-ମୁକ୍ତି

ରାଜା ବିକ୍ରମାର୍କ ପୁନର୍ବାର ସେହି ବୃକ୍ଷ ନିକଟକୁ ଲେଉଟି ଆସିଲେ । ବୃକ୍ଷରୁ ଶବଟିକୁ ଓତାରି ଆଣି ଶୁନ୍‌ଶାନ୍ ଶ୍ମଶାନକୁ ଅତିକ୍ରମ କରିବାକୁ ଲାଗିଲେ । ଆକାଶରେ ଘୋଟି ରହିଥାଏ କଳା ମେଘ । ଶୁଭୁଥାଏ ଘଡ଼ଘଡ଼ ଓ ଅଶରୀରୀମାନଙ୍କର ଅଟ୍ଟହାସ୍ୟ ।

ହଠାତ୍ ଶବସ୍ଥିତ ବେତାଳ କହିଲା, "ରାଜା, ମୁଁ ଜାଣିପାରୁ ନାହିଁ, କାହିଁକି ତୁମେ ଜୀବନ ପ୍ରତି ମାୟା ତୁଟାଇ ଏ ଦୁରୂହ ଶ୍ରମ କରିଚାଲିଛ ! କିନ୍ତୁ ସଂସାର ପ୍ରତି ମାୟା ନ ଥିବା ଲୋକଙ୍କ କପାଳରେ ଲେଖାଥିବା ମୃତ୍ୟୁ ମଧ୍ୟ କେବେ କେବେ ଠିକ୍ ସେହି ଭାବରେ ଘଟେ ନାହିଁ । ଉଦାହରଣ ପାଇଁ ତୁମକୁ ମୁଁ ·ଗୋପାଳକ ନାମକ ଲୋକର ଗଳ୍ପ କହୁଛି, ଶୁଣ । ଶୁଣିଲେ ଶ୍ରମ ଲାଘବ ହେବ ।

ବେତାଳ କହିବାକୁ ଆରମ୍ଭ କଲା : ମହେନ୍ଦ୍ରପୁରରେ ଗୋପାଳକ ନାମରେ ଜଣେ ଆଜନ୍ମ

## ବେତାଳ କଥା

ଦୁଃଖୀ ଭିକମାଗି ପେଟ ପୋଷୁଥାଏ । ଦିନେ ଖାଇବା ମିଳେ ତ ଆଉ ଦୁଇ ଦିନ ଉପାସରେ କଟାଏ ।

ଥରେ ରାମାନନ୍ଦ ନାମକ ଜଣେ ଜ୍ୟୋତିଷ କାଶୀ ଯିବା ବାଟରେ ଆସି ସେହି ଗାଁରେ ପହଞ୍ଚିଲେ । ଗାଁ. ଲୋକେ ତାଙ୍କୁ ନିଜ ନିଜର ଭଲ ମନ୍ଦ ପଚାରିବାକୁ ଆସିଲେ । ଗୋପାଳକ ମଧ୍ୟ ଯାଇ ପଚାରିଲା ତା'ର ଦୁଃଖ କେବେ ଘୁଞ୍ଚିବ ।

"ପୁଅ, ତୁମ କପାଳରେ ସୁଖ ଭୋଗ ନାହିଁ । ତେଣୁ ମୋର ଅନୁମାନ ହେଉଛି ତୁମର ଦରିଦ୍ରତା କେବେ ଘୁଞ୍ଚିବ ନାହିଁ ।" ରାମାନନ୍ଦ ବୁଝାଇ କହିଲେ ।

"ତେବେ ମୋତେ କୁହନ୍ତୁ ମୋର ମୃତ୍ୟୁ କେବେ ହେବ ଓ ଏ ସଂସାରରୁ ମୁଁ ମୁକ୍ତି ପାଇବି ।" ଗୋପାଳକ ପଚାରିଲା ।

"ଦେଖ, ପଡ଼ୋଶୀ ଗାଁରେ ରାମଗୁପ୍ତ ସୋମଗୁପ୍ତ ଓ ଭୀମଗୁପ୍ତ ନାମରେ ତିନୋଟି ଭାଇ ଅଛନ୍ତି । ସେମାନେ ବ୍ୟବସାୟୀ । ସେ ତିନିଜଣ ପ୍ରତ୍ୟେକେ ତୁମ ପାଖରେ ଗୋଟିଏ ଗୋଟିଏ ସୁନାମୋହର ଯୋଗୁ ଋଣୀ ଅଛନ୍ତି । ତୁମେ ସେହି ଋଣକୁ ଅସୁଲ କରି ଯେବେ ସେ ଧନ ଆନନ୍ଦରେ ଖର୍ଚ୍ଚ କରିବ ସେବେ ତୁମର ମୃତ୍ୟୁ ଘଟିବ ।" ରାମାନନ୍ଦ କହିଲେ ।

ଗୋପାଳକ ଖୁସି ମନରେ ରାମାନନ୍ଦଙ୍କ ଠାରୁ ବିଦାୟ ନେଇ ପଡ଼ୋଶୀ ଗାଁକୁ ଗଲା ଓ ଉପରୋକ୍ତ ତିନି ଭାଇଙ୍କ ସନ୍ଧାନ ନେଇ ସେମାନଙ୍କ-



ଠାରୁ ଛନୋଟି ମୋହର ଆଦାୟ କଲା ।

ଗୋପାଳକ ସୁନା ମୋହର ଛନୋଟି ନେଇ ଯାଇ ଗରିବମାନଙ୍କୁ ଅନ୍ନ ଦେଲା ଓ ଅନେକଙ୍କୁ ସାହାଯ୍ୟ କଲା । ସେ ଭାବିଲା, "ଓହୋ, ଆଜି-ଠାରୁ ମୋତେ ସଂସାରରୁ ମୁକ୍ତି ମିଳିଯିବ । ଯେକୌଣସି ସମୟରେ ତ ମରିଯିବି । ମୃତ୍ୟୁ-ପରେ ମୋର ଏ ଶରୀରଟି ଯଦି ଜନ୍ତୁମାନଙ୍କ ଆହାର ହୋଇପାରେ, ତେବେ ତ ଆହୁରି ଉତ୍ତମ ।" ଏକଥା ଭାବି ସେ ଜଙ୍ଗଲରେ ନିରୁ-ଦ୍ଦେଶ୍ୟ ଭାବରେ ଘୂରିବୁଲିଲା ।

ଦୁଇଦିନ ବିତିଗଲା । ଗୋପାଳକ ଭୋକରେ ଛଟପଟ ହେଲାଣି । କିନ୍ତୁ କୌଣସି ଜନ୍ତୁ ତାକୁ ଖାଇବା ପାଇଁ ଆସୁନାହାନ୍ତି । ସେ ବୁଝିପାରିଲା ନାହିଁ କାହିଁକି ଜ୍ୟୋତିଷଙ୍କ କଥା ପ୍ରମାଣିତ ନ ହେଉଛି । ଏହିପରି ଦ୍ୱିଧାରେ ପଡ଼ି ବୁଲୁ ବୁଲୁ ସେ ହଠାତ୍ ଏକ ଗର୍ତ୍ତ ଖାଇ ଭିତରକୁ ଖସି ପଡ଼ିଲା ।

"ଓହୋଃ, ତା'ହେଲେ ଭଗବାନ୍ ମୋ ପାଇଁ ଏହି ଗାତ ତିଆରି କରି ରଖିଥିଲେ ! ଯାହା ହେଉ ବର୍ତ୍ତମାନ ମୋର ମୃତ୍ୟୁ ସୁନିଶ୍ଚିତ ।" ଏହିପରି ଭାବୁ ଭାବୁ ସେହି ଗର୍ତ୍ତରେ ଏକ ଉଜ୍ଜ୍ୱଳ ଜିନିଷ ଉପରେ ତା'ର ଆଖି ପଡ଼ିଲା । ସେ ଯାଇ ଦେଖିଲା ତାହା ସୁନାର ଜିନିଷ । ତା'ପରେ ସେ ଦେଖିଲା ତା' ଭିତରେ ଏକ ସୁଡ଼ଙ୍ଗ ରହିଛି । ସେଠାରେ ଅସଂଖ୍ୟ ସୁନାମୋହରସବୁ ଗଦା ଗଦା ହୋଇ ଅଛି । ସେ ସବୁଗୁଡ଼ିକ



ମୋହର ଘରକୁ ବୋହିଆଣିଲା । ସେଥିରେ ସେ ଗରିବ ଦୁଃଖୀଙ୍କୁ ବହୁତ ଦାନ ଦେଇ ସାହାଯ୍ୟ କଲା । ସେଥି ପାଇଁ ସେମାନେ ତାକୁ ଦେବତା ଭଳି ମାନିଲେ । ଗ୍ରାମବାସୀମାନେ ବୁଝି ପାରିଲେ ନାହିଁ ଜନ୍ମଦୁଃଖୀ ଗୋପାଳକର ଏତେ ବୈଭବ କେଉଁଠୁ ଆସିଲା । ଆହୁରି ମଧ୍ୟ ସେ ବହୁତ ଧନ ବଞ୍ଚିଲା । ସବୁ ସୁନା ସେ ଗରିବମାନଙ୍କୁ ସାହାଯ୍ୟ କରିବାରେ ଖର୍ଚ୍ଚ କରେ । ନିଜେ ସାଧାରଣ ଜୀବନଯାପନ କରୁଥାଏ । ସମଗ୍ର ଜୀବନ ତା'ର ଅନ୍ୟର ସହାୟତା କରିବାରେହିଁ କଟିଗଲା ।

ବେତାଳ ଏ କଥାଟି ଶୁଣାଇ ପଚାରିଲା, "ରାଜା, ଗୋପାଳକର ମୃତ୍ୟୁ କାହିଁକି ହେଲା ନାହିଁ ? ଜ୍ୟୋତିଷ ରମାନନ୍ଦର କଥା ସମ୍ପୂର୍ଣ୍ଣ ମିଥ୍ୟା ହେବାର କାରଣ କ'ଣ ? ଏକଥାର ସମାଧାନ ଜାଣି ଯଦି ନ କହିବ, ତେବେ ତୁମର ମସ୍ତକ ସ୍କନ୍ଧଚ୍ୟୁତ ହେବ ।"

ବେତାଳର ପ୍ରଶ୍ନ ଶୁଣି ବିକ୍ରମାର୍କ ଉତ୍ତର ଦେଲେ, "ରମାନନ୍ଦର କଥା ମିଥ୍ୟା ପ୍ରମାଣିତ ହୋଇ ନାହିଁ । କାରଣ ଗୋପାଳକ ବ୍ୟବସାୟୀମାନଙ୍କ ଠାରୁ ଯେଉଁ ଋଣ ଅସୁଲ୍ କଲା ତାକୁ ନିଜ ପାଇଁ ଖର୍ଚ୍ଚ ନ କରି ଦୁଃଖୀ ଦରିଦ୍ରମାନଙ୍କୁ ବାଣ୍ଟିଦେଲା । ଯଦି ସେହି ଭିନୋଟି ମୋହର ସେ ନିଜ ସୁଖ ପାଇଁ ଖରଚ କରିଥା'ନ୍ତା ତେବେ ତାହାର ମୃତ୍ୟୁ ହୋଇଥା'ନ୍ତା । କିନ୍ତୁ ତା' ଭିତରେ ଦାନ ଦେବାର ଯେଉଁ ପ୍ରବୃତ୍ତି ଥିଲା, ତାହା ତାକୁ ନିଜ ପାଇଁ ଖର୍ଚ୍ଚ କରିବାକୁ ଦେଲା ନାହିଁ । ଶେଷରେ ମଧ୍ୟ ସେ ଭାବିଲା ଯେ ସେ ମରିବା ପରେ ତା'ର ଶରୀର ପାଉଁଶ ହୋଇଯିବା ପରିବର୍ତ୍ତେ ଜନ୍ତୁମାନେ ଖାଇଲେ ଭଲ । ସେହି ସଦିଚ୍ଛା ଯୋଗୁ ତାକୁ ଆହୁରି ଅଧିକ ସୁନା ମିଳିଲା । ସେ ଅହରି ଦାନ କଲା, ଲୋକେ ଆହୁରି ତା' ପ୍ରତି କୃତଜ୍ଞ ରହିଲେ ।"

ଏପରି ଭାବରେ ରାଜାଙ୍କର ମୌନ ଭଙ୍ଗ ହେବା ମାତ୍ରେ ଶବ ସହ ବେତାଳ ତାଙ୍କ କାନ୍ଧରୁ ଖସିଯାଇ ପୁନର୍ବାର ଅଦୂରର ବୃକ୍ଷ ଡାଳରେ ଝୁଲି ପଡ଼ିଲା ।"

(କଳ୍ପିତ)





# ଏକତାର ସୂତ୍ର !

ଗୋଟିଏ ଗାଁରେ ଗୌରୀ ନାମକ ଜଣେ କଳହୁଡ଼ୀ ସ୍ତ୍ରୀ ଲୋକ ଥାଏ । ସେ ସବୁବେଳେ କିଛି କଥା ନେଇ ବକ୍‌ବକ୍ ଆରମ୍ଭ କରିଦିଏ । ତା'ର ପୁଅଟିଏ ଥାଏ; ନାମ ରାମ ଦାସ । ପୁଅଟିକୁ କିନ୍ତୁ ସେ ଅତି ଆଦରରେ ପାଳୁଥାଏ । କ୍ରମେ ପୁଅଟି ବଡ଼ ହେଲା । କିନ୍ତୁ ମା'ର ଭୟରେ କେହି ରାମ ଦାସକୁ ଝିଅ ଦେବାକୁ ମଙ୍ଗିଲେ ନାହିଁ ।

ଥରେ ରାମ ଦାସ କୌଣସି କାମରେ ଗୋଟିଏ ଦୂର ଗାଁକୁ ଯାଇଥିଲା । ସେଠାରେ ପୁଷ୍କରିଣୀ କୂଳରେ ଦେଖିଲା ସୁନ୍ଦର ଝିଅଟିଏ; ତା'ର ଚାଲିଚଳଣ ମଧ୍ୟ ତା'କୁ ଭଲ ଲାଗିଲା । ତେଣୁ ସେ ତା' ବାପା ପାଖରେ ପହଞ୍ଚି ତାକୁ ବିବାହ କରିବାର ପ୍ରସ୍ତାବ ଦେଲା । ଝିଅଟିର ନାମ ସୁଜାତା । ଝିଅଟିର ଏ ପ୍ରସ୍ତାବରେ ସମ୍ମତି ଥିବାର ଜଣାଗଲା । ବାପା ମା' ଖୁସୀ ହେଲେ ।

ସୁଜାତାର ବାପ ମା ରାମ ଦାସକୁ କହିଲେ, "ଦେଖ ବାବୁ, ଝିଅଟି ଆମର ଟିକିଏ କଳହୁଡ଼ୀ ବୋଲି ତା'ର ବିବାହ ଏପର୍ଯ୍ୟନ୍ତ ହୋଇ ପାରି ନାହିଁ । ତୁମେ ଯଦି ପସନ୍ଦ କରିଛ ତ ତେବେ ବହୁତ ଆନନ୍ଦର କଥା ।" ରାମ ଦାସ ଏକଥା ଶୁଣି ନିଜ ମା'ର ଦୁର୍ଗୁଣଟି ମଧ୍ୟ କହିଲା । ସମସ୍ତେ କହିଲେ ସେଇ ଶାଶୁ ପାଖରେ ଏ ବୋହୂ ଠିକ ହେବ । ବାହାଘର ହୋଇଗଲା ।

ରାମ ଦାସକୁ ବୋହୂ ସହିତ ଦେଖି ଗୌରୀ ଆଶ୍ଚର୍ଯ୍ୟ ହୋଇଗଲା । କିନ୍ତୁ ତା' ପୁଅକୁ ଯେ ଝିଅଟିଏ ମିଳିଛି ସେଥି ପାଇଁ ସେ ଖୁସୀ ହୋଇଗଲା । ଗୋଟିଏ ମାସ ପର୍ଯ୍ୟନ୍ତ ପୁଅବୋହୂଙ୍କୁ ଅତି ଆରାମରେ ଗୌରୀ ରଖିଲା । କ୍ରମେ ଗୌରୀ ଛୋଟ ଛୋଟ କାମ ସୁଜାତାକୁ ଦେଲା । ସୁଜାତା

ରାଜନାଥ



ମଧ୍ୟ କିଛି ନ କହି କରିଗଲା । ଏପରି ଆହୁରି ମାସେ ବିତିଗଲା ।

କିଛି ଦିନ ପରେ ଶାଶୁର ବୋହୂ ପ୍ରତି ଆକର୍ଷଣ କ୍ରମେ କମିଗଲା ଓ ତା'ର ଅସଲ ପ୍ରକୃତି ବାହାରିଲା । ଏଣିକି ସେ ବୋହୂର ଛୋଟ ଛୋଟ ଦୋଷ ଖୋଜିବାକୁ ଲାଗିଲା । ବୋହୂ ମଧ୍ୟ ମୁହଁ ମୋଡ଼ି ଜବାବ ଦେବାକୁ ଲାଗିଲା । ତେଣୁ କ୍ରମେ ଝଗଡ଼ା ଆରମ୍ଭ ହେଲା ।

ଦିନେ ରାମ ଦାସ ବିଲରୁ ଲେଉଟି ଆସି ଦେଖିଲା ଶାଶୁ ବୋହୂ ଝଗଡ଼ା କରି ରୋଷେଇ ବନ୍ଦ କରିଛନ୍ତି । ଦୁହେଁ ଦୁହିଁଙ୍କ ଉପରେ ଦୋଷାରୋପ କରୁଛନ୍ତି । ରାମ ଦାସ ଗୁଡ଼ାଏ ପାଟି କଲା, କିନ୍ତୁ ଶୁଣୁଛି ବା କିଏ । ଗୌରୀ କହି ଲାଗିଛି, "ରାମ ଦାସ ପାଇଁ ବୋହୂ ହେଲା ପୃଥିବୀରେ ସବୁଠୁ ବଡ଼ ।" ଆଉ ସୁଜାତା କହି ଲାଗିଛି ଯେ ତା' ସ୍ୱାମୀ ପିଲାଙ୍କ ପରି ମା'ର କାନ ଧରି ଯଦି ଚାଲିବ ତେବେ ତା'ର ବାହା ହେବାର ଦରକାର କ'ଣ ଥିଲା !

ସେହି ଦିନଠୁଁ ରାମଦାସକୁ ଘରଟା ନର୍କ ପରି ଲାଗିଲା । ସହଜେ ତା'ର ସ୍ୱଭାବ ଚୁପ୍‌ଚାପ୍ । ସେଥିରେ ଦୁଇଜଣ ସବୁବେଳେ ତାକୁ ମଝିରେ ରଖି ଝଗଡ଼ା କରିବାରୁ ତାକୁ ବହୁତ ଦୁଃଖ ଲାଗେ । କିନ୍ତୁ ସେ ତଥାପି ଚୁପ୍ ରହିଯାଏ ।

ଥରେ ରାମ ଦାସ ତା'ର ଜମିଦାରର ଛୋଟ ଛୁଆକୁ ସାପ ମୁହଁରୁ ରକ୍ଷା କଲା । ତେଣୁ ଜମିଦାର ଖୁବ୍ ଖୁସୀ ହୋଇ ପୁରସ୍କାର ସ୍ୱରୂପ ତାକୁ ଦୁଧିଆଳୀ ଗାଈଟିଏ ଯାଚିଲେ । ପର ଦିନ ନେଇଯିବ କହି ରାମ ଦାସ ଘରକୁ ଯାଇ ସବୁକଥା ମା' ଓ ସ୍ତ୍ରୀ ଆଗରେ କହିଲା ।

ଗୌରୀ କହିଲା—"ଗୋମାତାକୁ ଘରକୁ ଆଣିବା ଖୁବ୍ ଶୁଭ ଲକ୍ଷଣ ।"

"ନାଁ ନାଁ, ଆମେ ମଇଁଷି ଆଣିବା ଯେ ବହୁତ ଦୁଧ ଦେବ ।" ସୁଜାତା କହିଲା ।

ତା'ପରେ ସେଇ କଥା ଉପରେ ଦୁଇଜଣ ଝଗଡ଼ା ଆରମ୍ଭ କରି ଦେଲେ ଓ ରାମ ଦାସ ଯେତେ ବୁଝାଇଲେ ମଧ୍ୟ ବୁଝିଲେ ନାହିଁ ।

ପରଦିନ ଜମିଦାର ପଚାରିଲେ, "ରାମ ଦାସ, ଗାଈ କାହିଁକି ନେଲ ନାହିଁ ?" ରାମ ଦାସ ବିଚରା ଲଜ୍ଜାରେ ସହିତ ତା'ର ଅସୁବିଧାଟି କହିଲା ।

ଜମିଦାର କହିଲେ, "ଆରେ ମୋ ମଇଁଷି ଗୁଡ଼ିକ ତ ମୁଁ ହାଟକୁ ବିକି ପାଇଁ ପଠାଇ ଦେଇଛି । ଖାଲି ଗାଈମାନେ ଅଛନ୍ତି । ଗୋଟିଏ ବାଛି ନେଇଯାଅ ।"

ଏକଥା ଶୁଣି ସେ ଘରକୁ ଫେରିଲା । କିନ୍ତୁ ଟା ଖୁସୀ ହେଲା ଯେ ଆଉ ସମସ୍ୟା ରହିବ ନାହିଁ । ଘରେ ପହଞ୍ଚି ସବୁ କଥା କହିଲା ।

ଗୌରୀ ଖୁସୀ ହୋଇ କହିଲା, "ଯାହା ହେଉ ଆମ ଘରକୁ ମଇଁଷି ଆସିବାରୁ ଭଗବାନ୍ ରକ୍ଷା କଲେ ।"

"ମଇଁଷି ପାଇବାର ଭାଗ୍ୟ ତୁମର କୁଆଡୁ ହେବ ?" ସୁଜାତା ଉତ୍ତର ଦେଲା । ସେଇଠୁ ପୁଣି ଝଗଡ଼ା ହେଲା । ରାମ ଦାସ ଦେଖିଲା ଝଗଡ଼ା ବର୍ତ୍ତମାନ ବନ୍ଦ ହେବାର କୌଣସି ଲକ୍ଷଣ ନାହିଁ । ତେଣୁ ସେ କହିଲା, "ମୁଁ ଯାଏ ଗାଈ ଘେନି ଆସେ ।" ସୁଜାତା ଚଟ୍‌କରି କହିଲା, "ଆଣିବ ତ କଳା ରଙ୍ଗର ଗାଈଟିଏ ଆଣ, ଅନ୍ତତଃ ମଇଁଷିର ରଙ୍ଗ ଦେଖି ଖୁସୀ ଲାଗିବ ତ ।" "ଶୁଣ ରାମ ଦାସ, ଘର ପାଇଁ ମଙ୍ଗଳ ଦାୟକ ଗାଈଟିଏ ଆଣୁଛ ତ ଧଳାରଙ୍ଗ ଶୁଭ । କଳା କାହିଁକି ?" ଗୌରୀ କହିଲା । ପୁଣି



ଏଇ କଥା ନେଇ ଶାଶୁ ବୋହୂ ଝଗଡ଼ା କଲେ ।

"ତୁମେ କଳାରଙ୍ଗକୁ ନିନ୍ଦା କରୁଛ ? ତୁମେ ତ ନିଜେ କଳା," ସୁଜାତା କହିଲା ।

"ତୁ ଧଳା ରଙ୍ଗକୁ ନିନ୍ଦା କରୁଛୁ ? ତୁ କ'ଣ ଧଳା ନୁହଁ ?" "ମୋର ଧଳା ରଙ୍ଗ ହୋଇ-ଥିଲେ ମୁଁ ଚୁପ୍ ରହିଥା'ନ୍ତି । ମୋ ରଙ୍ଗ ତ ହଳଦିଆ ।" ସୁଜାତା କହିଲା ।

ରାମ ଦାସ ଦେଖିଲା ଝଗଡ଼ା ଶେଷ ହେବାର କୌଣସି ଲକ୍ଷଣ ଦେଖାଯାଉ ନାହିଁ । ତେଣୁ ସେ ହାତରେ ବାଡ଼ି ଖାଇ ଚୁପ୍ ଚାପ୍ ଶୋଇ ଗଲା ।

ପୁଣି ପରଦିନ ଜମିଦାର ପଚାରିଲେ, "ରାମ

ଦାସ, କାଲି ତ କାହିଁ ଗାଈ ନେଲ ନାହିଁ ?"

ରାମଦାସ ସବୁ ଘଟଣା ଶୁଣାଇଲା ।

ଜମିଦାର କହିଲେ, "ଶୁଣ, ମୋ ଘରେ ଶାଶୁ ବୋହୂ ନାହାନ୍ତି, ତେବେ ଦୁଇ ସ୍ତ୍ରୀ । ପ୍ରଥମେ ତାଙ୍କର ଖୁବ୍ କଳି ହେଉଥିଲା । କିନ୍ତୁ ମୁଁ ଗୋଟାଏ ଉପାୟ ପାଞ୍ଚି ଦୁଇଜଣଙ୍କ ମଧ୍ୟରେ ଘନିଷ୍ଠତା ଆଣି ଦେଲି । ତୁମେ ବି ସେଇଆ କର । ଦୁଇ ଶତ୍ରୁଙ୍କ ମଧ୍ୟରେ ବଳବାନ୍ ଶତ୍ରୁ ଛିଡ଼ା କରାଇ ଦେଲେ ଦୁହିଁଙ୍କର ବନ୍ଧୁତା ହୋଇଯିବ ।"

"କିନ୍ତୁ ମୁଁ ଏପରି ଲୋକ କେଉଁଠୁ ଖୋଜିବି ?" ରାମ ଦାସ ପଚାରିଲା ।

"ସେଇଟି ତୁମେ ନିଜେ ।" ଜମିଦାର ହସି ହସି କହିଲେ ।

ରାମ ଦାସ ତାଙ୍କ କଥାରୁ ସବୁ ବୁଝିନେଲା । ତା'ପରେ ଖୁସୀ ହୋଇ ଲାଲ୍ ଗାଈଟିଏ ଧରି ଘରକୁ ଆସିଲା । ଶାଶୁ ବୋହୂ ଦୁହେଁ ଲାଲ୍ ଗାଈ ଦେଖି ରାଗିଗଲେ । ରାମ ଦାସ ମା'କୁ କହିଲା, "ତୁମେ ଆଉ କେତେଦିନ ବଞ୍ଚିବ ଯେ ସବୁବେଳେ ଅନ୍ୟକୁ ଅଭିଶାପ ଦେଉଛ ? କିଛି ବିବେକ ଜ୍ଞାନ ତୁମର ନାହିଁ ?"

ସୁଜାତା ଖୁସୀ ହୋଇଗଲା । କିନ୍ତୁ ପର କ୍ଷଣରେ ରାମ ଦାସ ସୁଜାତାକୁ କହିଲା, "ତୁ ନିଜ କାମ କର । ପୁରୁଷ ଲୋକଙ୍କ କାମରେ ତୁ କାହିଁକି କଥା କହୁ ? ମୁଁ ନିଜ ପସନ୍ଦରେ ଗାଈ ଆଣିଛି । ଏ ବିଷୟରେ ପାଟି ଫିଟେଇବୁ ତ ପିଟିପକାଇବି ।"

ସେଦିନଠୁଁ ଦୁଇଦିନ ଧରି ସେ ମା'କୁ ଗାଳି ଦେଲା ଓ ସ୍ତ୍ରୀକୁ ମଧ୍ୟ ଧମକ ଦେଲା । ସେମାନେ ରାମ ଦାସକୁ ଡରିଲେ । ରାମ ଦାସ ଘରେ ଥିଲେ ସେମାନେ ଡରିହରି କଥା ବନ୍ଦ କରି ଥା'ନ୍ତି । ସେ ବାହାରକୁ ଗଲେ ଦୁହେଁ ମିଶି ତା'ର ଦୋଷ ବାଛନ୍ତି । କ୍ରମେ ଦୁହିଁଙ୍କ ମଧ୍ୟରେ ଘନିଷ୍ଠତା ହେଲା ଓ ସମଗ୍ର ପରିବାରଟିରେ ଶାନ୍ତି ସ୍ଥାପିତ ହେଲା ।



# କଳିର କାରଣ

ବହୁତ ଦିନ ପରେ ରବୀନ୍ଦ୍ର ତାଙ୍କ ନିଜ ସହରକୁ ଫେରିଲେ । ତାଙ୍କର ଦୁଇ ବାଲ୍ୟବନ୍ଧୁ ଭୂପତି ଓ ବିଶ୍ୱେଶ୍ୱର ତାଙ୍କୁ ପାଇ ବହୁତ ଆନନ୍ଦିତ ହେଲେ । ରବୀନ୍ଦ୍ର ଦୁଇ ବନ୍ଧୁଙ୍କ ଘରେ ଦୁଇ ଦୁଇ ଦିନ ଆତିଥ୍ୟ ସ୍ୱୀକାର କରିବାକୁ ସମ୍ମତ ହେଲେ ।

ପ୍ରଥମେ ସେ ରହିଲେ ଭୂପତି ଘରେ । ଭୂପତି ଓ ତାଙ୍କ ସ୍ତ୍ରୀ ତାଙ୍କୁ ବହୁ ଆଦର କଲେ, କିନ୍ତୁ ରବୀନ୍ଦ୍ର ଦେଖିଲେ, ଭୂପତି ସବୁବେଳେ ତାଙ୍କୁ ଜଗି ରହୁଛି । ଏକୁଟିଆ ବୁଲାବୁଲି କରିବାକୁ ଦେଉ ନାହିଁ । ଦୁଇ ଦିନ ପରେ ସେ ବିଶ୍ୱେଶ୍ୱର ଘରେ ଯାଇ ରହି ସେଠି ବି ସେହି କଥା ଲକ୍ଷ୍ୟ କଲେ ।

ଯାହା ହେଉ, ରବୀନ୍ଦ୍ର କୌଣସି ଆଳରେ ଥରେ ସେଠାରୁ ଖସି ଯାଇ ଲକ୍ଷ୍ୟ କଲେ, ତାଙ୍କ ଉଭୟ ବନ୍ଧୁଙ୍କ ଘର ପଛପଟେ ଦୁଇ ବନ୍ଧୁଙ୍କ ପତ୍ନୀ ତୁମୁଳ କଳି ଲଗାଇଛନ୍ତି । ସେ ଜଣେ ପଡ଼ୋଶୀ ପାଖରୁ ବୁଝିଲେ, ଏଇଟା ଦୁହିଙ୍କର ଦୈନନ୍ଦିନ ଅଭ୍ୟାସ !

ରବୀନ୍ଦ୍ର ଦୁଇ ବନ୍ଧୁଙ୍କୁ ଡକାଇ ସାଫ୍ ସାଫ୍ କହିଲେ, "ମୋତେ ଲୁଚାଇ ଲାଭ ନାହିଁ । କାହିଁକି ତୁମ ସ୍ତ୍ରୀମାନେ ପରସ୍ପର କଳି କରନ୍ତି ?" ଦୁହେଁ ଉତ୍ତର ଦେଲେ, "ଆମେ ସେ ଦୁହିଁଙ୍କୁ ଦାସଦାସୀ ଯୋଗାଇ କେତେ ଆରାମରେ ନିଶ୍ଚିନ୍ତରେ ରଖିଛୁ । ତଥାପି ସେମାନେ କିଛି ନା କିଛି ଆଳରେ କଳି କରନ୍ତି ।" "ବୁଝିଲି । ତୁମେ ଦାସଦାସୀ କମାଇ ଦିଅ । ମୁଣ୍ଡରେ ଦାୟିତ୍ୱ ଦେଲେ ସବୁ ଠିକ୍ ହୋଇଯିବ ।" ରବୀନ୍ଦ୍ରଙ୍କ ଉପଦେଶ କାର୍ଯ୍ୟକାରୀ କରି ଦେଖାଗଲା, ଦୁହେଁ ଆଉ କଳି କରିବାକୁ ବେଳ ପାଉ ନାହାନ୍ତି ।






# ଅପାତ୍ର ଦାନ

ଗୋଟିଏ ଗାଁରେ ଗଙ୍ଗାରାମ ଓ ଦୁର୍ଗା ଦାସ ନାମରେ ଦୁଇ ବ୍ୟବସାୟୀ ଥିଲେ । ବ୍ୟବସାୟୀ ଦୁହେଁ ଗୋଟିଏ ଶସ୍ୟ ବ୍ୟବସାୟର ଦୁଇ ଅଂଶୀଦାର । ଅନେକ ଦିନ ଧରି ସେମାନେ ବ୍ୟବସାୟ କଲେ ମଧ୍ୟ ଦୁହିଁଙ୍କ ମଧ୍ୟରେ କୌଣସି ମତଭେଦ ନ ଥିଲା; ବରଂ ଏତେ ଘନିଷ୍ଠତା ଥିଲା ଯେ ଗ୍ରାମରେ ଭାଇ ଭାଇରେ ବିବାଦ ଲାଗିଲେ ଭଦ୍ରଲୋକମାନେ ବନ୍ଧୁତା ଓ ଏକତାର ଉଦାହରଣ ଦେଇ ସେମାନଙ୍କ କଥାହିଁ କହୁଥିଲେ ।

ବନ୍ଧୁ ଦୁଇଜଣ ପ୍ରତିବର୍ଷ ପ୍ରଥମ ସଂକ୍ରାନ୍ତିରେହିଁ ନିଜ ନିଜର ଅଂଶ ଭାଗ କରି ନେଉଥିଲେ । ଗଙ୍ଗାରାମ ପ୍ରତିଥର ନିଜ ଅଂଶରୁ ତିନିଶହ ପଞ୍ଚଷଠି ଟଙ୍କା ଅଲଗା କରି ଗୋଟିଏ ପୁଟୁଳାରେ ରଖେ । କିନ୍ତୁ ଦୁର୍ଗାଦାସ କେବେ ମଧ୍ୟ ପଚାରେ ନାହିଁ, "ତୁମେ ଏ ଟଙ୍କା କାହିଁକି ବା କ'ଣ ପାଇଁ ରଖୁଛ ? ମୋତେ ଏହାର ଅର୍ଥ ବୁଝାଇ ଦିଅ, ବା ସେପରି କିଛି ।" ଗଙ୍ଗାରାମ ମଧ୍ୟ ଆଶ୍ଚର୍ଯ୍ୟ ହେଉଥାଏ ଯେ ଦୁର୍ଗା ଦାସ କିମିତି କିଛି ପଚାରୁ ନାହିଁ ।

ପ୍ରତିବର୍ଷ ସେହି ଗ୍ରାମର ସୀମାନ୍ତରେ କିଛିଦିନ ପାଇଁ ମେଳା ବସେ । ମେଳା ସହିତ ଜୁଆଖେଳ ଚାଲେ ଓ ମଦଦୋକାନ ମଧ୍ୟ ବସେ । ମେଳାଠାରୁ ଟିକିଏ ଦୂରରେ ଗୋଟିଏ ଚଟିଘର ଥାଏ । ବାହାରେ ଥାଏ କୂଅଟିଏ । କୂଅ ଚାରିପଟେ ଥାନ୍ତି ସୁନ୍ଦର ଲମ୍ବା ଲମ୍ବା ଗଛମାନ । ସେ ଚଟିଘରେ ଅନେକ ଲୋକ ଆସି ରହନ୍ତି । ଗଙ୍ଗାରାମ ସେଇ କୂଅ-ପାଖକୁ ଯାଇ ତା'ର ତିନିଶହ ପଞ୍ଚଷଠି ଟଙ୍କାର ଥଳିଟି ସବୁବର୍ଷ ସେଇଠି ରଖି ଚାଲିଯାଏ । ସେ ଜାଣେ ନାହିଁ

ପ୍ରିୟରଞ୍ଜନ

ତା'ପରେ କିଏ ଆସି ସେ ଟଙ୍କା ନେଇଯାଏ ।

ଥରେ ଗଙ୍ଗାରାମ ଭାବିଲା ସେ ଦେଖିବ ପ୍ରକୃତରେ କିଏ ସେ ଟଙ୍କା ପାଉଛି । ଗଙ୍ଗାରାମ କୂଅ ପାଖରୁ ଦୂରେଇ ଯାଇ ପୁଣି ଆସି ପହଞ୍ଚିଲା । ସେ ଟିକେ ଦୂରରୁ ଦେଖିଲା ଜଣେ କିଏ ମୁଣ୍ଡରେ ତଉଲିଆଟିଏ ଘୋଡ଼େଇ ହୋଇ ଟଙ୍କା ଥଳିଟି ଧରି ଚାଲିଗଲା । ତାକୁ ଚିହ୍ନିବା ପାଇଁ ସେ ତା'ର ପିଛା ଧରିଲା ଓ ଅଳ୍ପ ସମୟ ପରେ ଜାଣି ପାରିଲା ସେହି ଲୋକଟି ଦୁର୍ଗା ଦାସ ବ୍ୟତୀତ ଅନ୍ୟ କେହି ନୁହେଁ ।

"ଦେଖ ବନ୍ଧୁ, ମୁଁ ଭାବିଥିଲି ମୋ ଟଙ୍କା କୌଣସି ଗରିବ ଲୋକ ହାତରେ ପଡ଼ୁଛି ବୋଲି, କିନ୍ତୁ ଏ ଟଙ୍କା ଶେଷରେ ତୁମର ହାତରେ ପଡ଼ିଲା ?" ଗଙ୍ଗାରାମ ବିସ୍ମୟରେ ପଚାରିଲା ।

ଦୁର୍ଗାଦାସ ହସି ହସି ପଚାରିଲା—"ଦେଖ ବନ୍ଧୁ, ତୁମେ ଯେତେବେଳେ ଟଙ୍କା ଫୋପାଡ଼ି ଦେଇ ଯାଉଛ, ସେତେବେଳେ ତାକୁ ଯିଏ ପାଇଲେ ତୁମର କ'ଣ ଅଛି ?"

"କିନ୍ତୁ ତୁମେ ଯଦି ଜାଣନ୍ତ କାହିଁକି ଏ ଟଙ୍କା ମୁଁ ଏଠାରେ ଏପରି ଫୋପାଡ଼ି ଦେଇ ଯାଉଛି, ତେବେ ତୁମେ ଏପରି କହନ୍ତ ନାହିଁ ।" ଗଙ୍ଗାରାମ କହିଲା ଓ ତା'ର ଜୀବନର ପୂର୍ବ ବୃତ୍ତାନ୍ତ ଗପିବାକୁ ଆରମ୍ଭ କଲା :

"ଛୁଆବେଳଠୁଁ ମୋର ବାପ ମା ମରିଯାଇଥିଲେ । ମୁଁ ଗରିବ ଥିଲି, ନିଜ ପେଟ ପୋଷିବା ପାଇଁ ଛୋଟବେଳଠୁଁ ମୋତେ କାମ





ମନରେ ଜୀବନ ପ୍ରତି ପୁଣି ମମତା ଆସିଗଲା । ସେହି ମୁଦିଟି ବିକି ଗୋଟିଏ ଦୁଧିଆଳୀ ମଇଁଷି କିଣିଲି । ସେଥିରୁ ଟଙ୍କା ରଖି ରଖି ବଳଦ ଗାଡ଼ିଟିଏ କିଣିଲି । ତା'ପରେ ତୁମ ସହିତ ମୋର ବନ୍ଧୁତା ହେଲା । ସେଥି ପାଇଁ ସେହି ଦିନଠୁ ପ୍ରତି ବର୍ଷ ଏଇ ସନ୍ଧ୍ୟାନ୍ତରେ ଏଇଠି ତିନିଶହ ପଞ୍ଚଷଠି ଟଙ୍କା ରଖି ଦେଇ ଯାଏ ।"

ଏସବୁ କଥା ଶୁଣି ଦୁର୍ଗା ଦାସ କହିଲା, "ତୁମର ବିଗ୍ରହ ହୁଏତ ବା ବଡ଼ ହୋଇପାରେ, କିନ୍ତୁ ତୁମ ଟଙ୍କା ଯିଏ ପାଉ ତା'ର ବୁଦ୍ଧି କୁମାର୍ଗକୁ ଧରିବ । ଦେଖିବାକୁ ଗୁହାଁ ତ ଦେଖାଇ ଦେବି ।" ତା'ପରେ ସେ ଗଙ୍ଗାରାମକୁ ଧରି କୂଅ ପାଖରେ ଥିବା ଗୋଟିଏ ଗଛ ଉପରେ ଲୁଚି ବସି ରହିଲା ।

କରିବାକୁ ପଡ଼ିଲା । ଥରେ ଦୁର୍ଭିକ୍ଷ ପଡ଼ିବାରୁ ମୋ ଗାଁର ଲୋକମାନେ ଗାଁ ଛାଡ଼ି ପଳାଇଲେ । ମୁଁ ବୁଲି ବୁଲି ଆସି ଏଇଠି ପହଞ୍ଚିଲି । ଏଠି ଗୋଟିଏ ମେଳା ହେଉଥାଏ । ମୁଁ ଗୁରିଦିନ ଧରି କିଛି ଖାଇ ନ ଥାଏ । ମାଗି ଖାଇବାକୁ ତର ସହିଲା ନାହିଁ । ପେଟ ବିକଳରେ ଗୋଟିଏ ମିଠାଇ ଦୋକାନରେ ପଶି ଲଡ଼ୁ ଚୋରିକରି ଖାଇଲି । ଧରା ପଡ଼ିଲି ଓ ମାଡ଼ ଖାଇଲି । ଭୋକର ଦାଉ, ପୁଣି ତା' ଉପରେ ମାଡ଼, ଅତି ଅସହ୍ୟ ଲାଗିଲା । ମୁଁ ଏଇ କୂଅକୁ ଡେଇଁପଡ଼ିବାକୁ ସ୍ଥିର କଲି । ଠିକ୍ ଡେଇଁବା ଆଗରୁ ଲାଲ ପଥରବସା ମୁଦିଟିଏ ପାଇଲି । ବେଶ୍, ମୋ

ଦୁର୍ଗା ଦାସ ଗୋଟିଏ ଗେଟ ଥଳି ବାହାର କରି କୂଅ ପାଖରେ ପକାଇ ଦେଲା । କିଛି ସମୟ ପରେ ସେଠାକୁ ଆସିଲେ ଜଣେ ଗେରୁଆ-ବସ୍ତ୍ର ଧାରୀ ଧଳାଦାଢ଼ୀବାଲା ବାବାଜୀ । ସେ ମୁହଁ ହାତ ଧୋଇବା ପାଇଁ ପାଣି କାଢ଼ିବାକୁ ଯିବା ବେଳେ କୂଅ ଉପରେ ପଡ଼ିଥିବା ଥଳି ଦେଖିଲେ । ସଙ୍ଗେ ସଙ୍ଗେ ତାଙ୍କ ମଧ୍ୟରେ ଏକ ବିରାଟ ପରିବର୍ତ୍ତନ ଦେଖା ଦେଲା । ନିଜର କାମ ଦାମ ଓ ନାମ ଜପ ବନ୍ଦ କରି ସେ କନ-କନ ହୋଇ ଗୁରିଆଡ଼କୁ ଅନାଇଲେ କେହି

କାଳେ ତାଙ୍କୁ ଦେଖୁଛି । ତା'ପରେ ଥଳିଟି ନିଜ ଥଳିରେ ପୁରାଇ ନିଜକୁ ନିଜେ କହିଲେ, "ବର୍ତ୍ତମାନ ମୋର ଗରିବ ଜୀବନର ଅବସାନ ହେଲା; ବାହା ହୋଇ ଆରାମରେ ରହିବ ।" ତା'ପରେ ଯଥା ଶୀଘ୍ର ସେ ସେଠାରୁ ପ୍ରସ୍ଥାନ କଲେ ।

ଗଙ୍ଗାରାମର ମୁହଁରୁ ବାହାରିଗଲା, "ସର୍ବ-ତ୍ୟାଗୀ ସାଧୁ ଏଇ ବୟସରେ ବାହା ହେବାକୁ ଚାହୁଁଛନ୍ତି ?" ଦୁର୍ଗା ଦାସ ଗଙ୍ଗାରାମକୁ ଚୁପ୍‌କରି ରହିବାକୁ ସଙ୍କେତ ଦେଲା । ତା'ପରେ ରୂପାର ଟଙ୍କାଟିଏ ବାହାର କରି କୂଅ ମୂଳକୁ ପକାଇ ଦେଲା ।

କିଛି ସମୟ ପରେ ଦୁଇଟି କଳହରତ ଜୁଆଡ଼ି ସେଠାରେ ଆସି ପହଞ୍ଚିଲେ ।

ଜଣେ କହୁଛି, "ମୁଁ ଘରୁ ମଇଁଷି କିଣିବାକୁ ଟଙ୍କା ଆଣିଥିଲି । ତୋର କଥାରେ ପଡ଼ି ଜୁଆ ଖେଳରେ ତାକୁ ହରାଇଲି । ହାତରେ ଗୋଟିଏ ବି ଟଙ୍କା ନାହିଁ । ମୁଁ ଆଉ ଘରକୁ କେଉଁ ମୁହଁ ନେଇ ଫେରିବି ? ତା'ଠାରୁ ବରଂ ଏଇ କୂଅରେ ଡେଇଁ ପଡ଼ି ମରିଯାଏ ।" ଅନ୍ୟଜଣକ ତାକୁ ଧରିବାର ଚେଷ୍ଟା କରୁଛି । ସେହି ମୁହୂର୍ତ୍ତରେ ପ୍ରଥମ ଜଣକର ରୂପାଟଙ୍କାଟି ଉପରେ ଆଖି ପଡ଼ିଲା । ଚଟ୍‌କରି ସେ ତାକୁ ଉଠାଇ ନେଇ କହିଲା, "ଠିକ୍ ସମୟରେ ମୋତେ ଏ ଟଙ୍କା ମିଳିଲା । ବର୍ତ୍ତମାନ ଏଇ ଟଙ୍କାରେ ମୁଁ ହରାଇ-ଥିବା ସମସ୍ତ ଟଙ୍କା ଫେରି ପାଇବି ।" ଏକଥା



କହି ସେ ପୁଣି ଜୁଆଖେଳ ପାଖକୁ ଦୌଡ଼ିଲା ।

"ଆରେ ସେଥିରେ ମୋର ବି ଅଧା ଭାଗ ଅଛି ।" ହିଷ୍ଟୀପୁଟି ଚିତ୍କାର କରି ତା'ପଛରେ ଦୌଡ଼ିଲା । ଗଙ୍ଗାରାମ ଦୁର୍ଗା ଦାସକୁ କହିଲା, "ଦେଖ ଭାଇ, ଏଇ ଲୋକଟି ଜୁଆରେ ସବୁ ପଇସା ହରାଇ ପୁଣି ଭାବୁଛି ଏଇ ପଇସାରେ ସବୁ ଜିତିବ ବୋଲି ।"

ଦୁର୍ଗାଦାସ ଚୁପ୍ ରହିଲା । କିଛିଏ ପରେ ଜଣେ କାଠୁରିଆ କାଠବିଡ଼ାଟିଏ ଧରି କୂଅ ପାଖକୁ ଆସିଲା । ପୁଣି ଦୁର୍ଗା ଦାସ ଟଙ୍କାର ଛୋଟ ଥଳିଟିଏ କୂଅ ପାଖରେ ପକାଇ ଦେଲା ଚୁପ୍‌ଚୁପ୍ ।

କାଠୁରିଆ କହୁଥାଏ, "ମୁଁ କେତେବେଳେ ଏ କାଠତକ ବିକିବି ଓ ଘରେ ପହଞ୍ଚି ଖାଦ୍ୟ ତିଆରି କରିବି !" କୂଅରୁ ପାଣିକାଢ଼ି ସେ ପେଟଭରି ପାଣିପିଇ ତା'ପରେ ହାଟ ଆଡ଼କୁ ଚାଲିଗଲା ।

ଗଙ୍ଗାରାମ ଆଶ୍ଚର୍ଯ୍ୟ ହୋଇ କହିଲା, "ଆରେ, ଟଙ୍କା ଥଳିକୁ ନ ଦେଖି ଲୋକଟା ଚାଲିଗଲା ?"

"ଦେଖିଲ ତ ? ତୁମ ଧନ ଅପାତ୍ରରେ ପଡ଼ି କିପରି କୁଫଳ ଦେଉଛି ? ବନାଶ୍ରମରେ ପାଇବା ଟଙ୍କାକୁ ଭଲ ଉପାୟରେ ଖର୍ଚ୍ଚ କରିବା ଲୋକ ବହୁତ କମ୍ । ପ୍ରୌଢ଼ ସାଧୁର ମନ ମଧ୍ୟ ଧନ ଦେଖି ପରିବର୍ତ୍ତନ ହୋଇଗଲା । ସୁଖ ଉପରେ ମନ ଲାଗିଲା, ଜୁଆଡ଼ିର ଯେଉଁ କିଛିଏ ବା ଜ୍ଞାନୋଦୟ ହୋଇଗଲା ଟଙ୍କା ପୁଣି କୁବୁଦ୍ଧିର ଉଦ୍ରେକ ହେଲା । କିନ୍ତୁ କାଠୁରିଆ ନିଜ ଶ୍ରମ ଉପରେ ଆଶା ରଖିଛି । ସେଥି ପାଇଁ ସେ ଧନ ଆଡ଼େ ଚାହିଁଲା ବି ନାହିଁ ।" ଦୁର୍ଗା ଦାସ ବୁଝାଇଲା ।

"ତେବେ ଆଜି ପର୍ଯ୍ୟନ୍ତ ମୁଁ ଯେଉଁ ଟଙ୍କା ସବୁ ଏଠି ରଖି ଆସିଛି ସେସବୁର ପରିଣତି ଏଇଆ ହୋଇଛି ! ହାୟ ହାୟ !" ଗଙ୍ଗାରାମ କହିଲା ।

"ନାହିଁ ନାହିଁ, ଦୁଃଖ କର ନାହିଁ, ସେସବୁ-ଧନ ମୁଁ ଗୁପ୍ତରେ ସୁରକ୍ଷିତ ରଖିଛି । ସେଥିରେ ଆମ ଦୁଇଜଣଙ୍କ ନାମରେ ପାଠଶାଳାଟିଏ ଖୋଲିବା ।" ଦୁର୍ଗା ଦାସ ସାନ୍ତ୍ୱନା ଦେଲା ।





# ସାଧୁବେଶୀ ଚୋର

ଗୋବିନ୍ଦ କୁକୁରଟିକୁ ଧରି ରାମପୁରରୁ ଯାଇ ଗଙ୍ଗାପୁରରେ ପହଞ୍ଚିଲା । ସେତେବେଳକୁ ସନ୍ଧ୍ୟା ହୋଇଗଲାଣି । କ୍ଷୁଧା ତୃଷାରେ ସେ ଅବଶ ହୋଇ ପଡ଼ିଲାଣି । ତୃଷାନିବାରଣ ପାଇଁ ପାଣି ଖୋଜିବାକୁ ଗଲା । ସନ୍ଧ୍ୟାବେଳକୁ ଗ୍ରାମଟି ନିର୍ଜନ ହୋଇ ଗଲାଣି ।

ଗୋଟିଏ ଘରେ ଟିକିଏ ଆଲୁଅ ଦିଶୁଥିଲା ଯେ ଗୋବିନ୍ଦ କବାଟ ଖଡ଼ଖଡ଼ କରିବାମାତ୍ରେ ଭିତରୁ ଯାହା କଥାବାର୍ତ୍ତା ଶୁଭୁଥିଲା ବନ୍ଦ ହୋଇଗଲା ।

ଗୋବିନ୍ଦ ଆଶ୍ଚର୍ଯ୍ୟ ହୋଇଗଲା । ସେ ପୁଣି ଆଉ ଏକ ଘରେ ପହଞ୍ଚିଲା । ଖଡ଼ଖଡ଼ ନ କରି ଭିତରକୁ ଉଙ୍କିମାରି ଚାହିଁଲା । ଭିତରେ ସ୍ୱଳ୍ପା-ଲୋକରେ କେତେଜଣ ଲୋକ ଘୋଡ଼ି ହୋଇ ବସି ଗଳ୍ପ କରୁଛନ୍ତି ।

"ଭାଇ, ମୋତେ ଶୋଷ ହେଉଛି । ଟିକେ ପିଇବା ପାଣି ଦିଅନ୍ତୁ ।" ଗୋବିନ୍ଦ ନମ୍ର କଣ୍ଠରେ ପଚାରିଲା ।

ସଙ୍ଗେ ସଙ୍ଗେ ସେମାନେ ପୁରା ଦେହ ଚଦରରେ ଢାଙ୍କି ହୋଇ ବିଛଣାରେ ଶୋଇ-ଗଲେ । ଏତେ ଶୋଷ ଓ ନିରାଶା ମଧ୍ୟରେ ବି ଗୋବିନ୍ଦ ହସ ରୋକି ପାରିଲା ନାହିଁ ।

ସେ ଭାବିଲା ଏତେ ଶୀଘ୍ର ଗ୍ରାମବାସୀମାନେ କାହିଁକି ଶୋଇ ପଡ଼ୁଛନ୍ତି । ନିଶ୍ଚୟ କୌଣସି କଥାରେ ଡରି ଏପରି ହେଉଛନ୍ତି । ତା'ପରେ ସେ ଗାଁ ଭିତରେ ଚାଲି ଚାଲି ମନ୍ଦିର ପାଖରେ ପହଞ୍ଚିଲା ।

ସେଠି ଦେଖିଲା ମନ୍ଦିର ମଣ୍ଡପରେ ତିନିଜଣ ଲୋକ ବସି ଗଳ୍ପ କରୁଛନ୍ତି । ତା'ର ଟିକେ ସନ୍ଦେହ ହେଲା । ତଥାପି ସେ ଯାଇ ନିର୍ଭୟରେ



ସେମାନଙ୍କ ପାଖରେ ପହଞ୍ଚିଲା । ସେମାନଙ୍କୁ ଦେଖି ତା' କୁକୁର ଟିକିଏ ଭୁକି ଦେଲା ।

ତାଙ୍କ ଭିତରୁ ଜଣେ ଗଞ୍ଜେଇ ଟାଣୁଥିଲା । ବାକି ଦୁଇଜଣ ମାଂସ ଖାଇ ମଦ ପିଉଥିଲେ । ଗଞ୍ଜେଇବାଲା ଗୋବିନ୍ଦକୁ ଦେଖି ପଚାରିଲା, "ଆରେ, ତୁ ପୁଣି କିଏ ?"

"ମୋତେ ଖୁବ୍ ଶୋଷ ଲାଗୁଛି । ଟିକେ ପାଣି ଆଗ ଦିଅ । ତା' ପରେ ସବୁ କଥା କହିବି ।" ଗୋବିନ୍ଦ କହିଲା ।

"ଧେତ୍, ପାଣି କ'ଣ ଆମେ ଜାଣୁ ନାହିଁ । ଆମେ ମଦ ଛଡ଼ା ଆଉ କିଛି ପିଉନା । ତେବେ ଶୋଷିଲାକୁ କିଛି ପିଇବାକୁ ଦେବା କର୍ତ୍ତବ୍ୟ । ଏଥିରୁ ଟିକେ ପିଇ ନେଇ ଗଳା ଓଦା କରିନେ" ଆଉ ଜଣେ କହିଲା ।

ଗୋବିନ୍ଦ କିଛି ଉତ୍ତର ନ ଦେଇ ସେଠାରୁ ଚାଲିଗଲା ଓ ଅନ୍ୟ କେଉଁଠି ଯାଇ ଶୋଇଗଲା ।

ପରଦିନ ସକାଳୁ ଉଠି ଗୋବିନ୍ଦ ଦେଖିଲା ଗ୍ରାମଟି ଲୋକମାନଙ୍କର କୋଳାହଳରେ ପୂର୍ଣ୍ଣ, ବହୁତ ଉତ୍ସାହର ସହିତ ଲୋକେ କୁଆଡ଼େ ସବୁ ଯାଉଛନ୍ତି । ସେ ପଚାରି ବୁଝିଲା ଯେ ସେଦିନ ଜଣେ ସାଧୁ ଲୋକମାନଙ୍କୁ ଦର୍ଶନ ଦେଉଛନ୍ତି । ଚାରି ସପ୍ତାହ ପୂର୍ବରୁ ସେ ଏଠାକୁ ଆସିଥିଲେ । ସେ ଜଣେ ସାଧାରଣ ସାଧୁ ନୁହନ୍ତି, ସେ ତ୍ରିକାଳଦର୍ଶୀ । ସେ ଗ୍ରାମ ବାହାରେ ବରଗଛ ମୂଳେ ରହୁଛନ୍ତି । ସେ ସପ୍ତାହରେ ଶୁକ୍ରବାର ଛଡ଼ା ଆଉ ସବୁଦିନ ଧ୍ୟାନସ୍ଥ ରହନ୍ତି । ଶୁକ୍ରବାର ଦିନ ଲୋକେ ତାଙ୍କୁ ଦର୍ଶନ କରି ପାଦଧୂଳି ନେବା ପାଇଁ ବ୍ୟାକୁଳ । ସେଥିପାଇଁ ଖୁବ୍ କୋଳାହଳ ଲାଗିଛି । ଲୋକମାନେ ସାଧୁଙ୍କ ପାଖରେ ନିଜର ଇଚ୍ଛା ପ୍ରକାଶ କରନ୍ତି; ସାଧୁ ଦେବତାମାନଙ୍କ ସହିତ ପରାମର୍ଶ କରି ଭକ୍ତମାନଙ୍କୁ ଉତ୍ତର ଦିଅନ୍ତି ।"

ଏସବୁ କଥା ଗୋବିନ୍ଦ ପାଇଁ କିନ୍ତୁ ବିଶ୍ୱାସଯୋଗ୍ୟ ନ ଥିଲା । ସେ ଲୋକମାନଙ୍କୁ ପଚାରିଲା— "ସବୁ ତ ଠିକ୍ ଅଛି କିନ୍ତୁ ମୋତେ କୁହ ସନ୍ଧ୍ୟା ହେଲେ ଗାଁ ଲୋକ କାହିଁକି କବାଟ ବନ୍ଦ କରି ଶୋଇଯାଉଛନ୍ତି ?"

ଲୋକମାନେ କହିଲେ, "ଏ ଗାଁରେ ଖୁବ୍ ଚୋରର ଭୟ ଅଛି । ସେମାନେ ରାକ୍ଷସଠାରୁ ମଧ୍ୟ ନିଷ୍ଠୁର । ବିନା କାରଣରେ ମାରି ପକାନ୍ତି; ସାଧୁବାବା ମଧ୍ୟ ଚେଷ୍ଟା କରି ତାଙ୍କର କିଛି

କରିପାରୁ ନାହାନ୍ତି, କାରଣ ସେମାନେ ହେଲେ ରାବଣର ବଂଶଧର । ତାଙ୍କ ସହିତ ଶତ୍ରୁତା କରି ଚଳିହେବ ନାହିଁ । ଏସବୁ କଥା ସାଧୁବାବାଙ୍କୁ ଦେବତାମାନେ କହିଛନ୍ତି । ସେଥିପାଇଁ ସାଧୁ-ବାବାଙ୍କର ଦେବତାମାନଙ୍କ ସହିତ ମଝିରେ ମଝିରେ ଝଗଡ଼ା ହୁଏ ।"

ଶୁକ୍ରବାର ଦିନ ଗ୍ରାମର ଅନ୍ୟମାନଙ୍କ ସହିତ ଗୋବିନ୍ଦ ମଧ୍ୟ ସାଧୁବାବାଙ୍କୁ ଦର୍ଶନ କରିବାକୁ ଗଲା । ସେତେବେଳେ ସାଧୁବାବା ଯୋଗ ସମାଧିରେ ଥିଲେ । ବେକରେ ରୁଦ୍ରାକ୍ଷ ମାଳା, ପାଖରେ କମଣ୍ଡଳୁ, ଦାଢ଼ୀବାଲା ଅନେକ ସ୍ୱାସ୍ଥ୍ୟ-ବାନ ଯୁବକ ଶିଷ୍ୟମାନେ ମଧ୍ୟ ରହିଥା'ନ୍ତି । ସମସ୍ତେ ଗେରୁଆ ବସ୍ତ୍ର ପିନ୍ଧିଥା'ନ୍ତି ଓ ରୁଦ୍ରାକ୍ଷ-ମାଳା ପକାଇଥା'ନ୍ତି ।

ଲୋକମାନେ ଜଣ ଜଣ କରି ସାଧୁଙ୍କ ପାଖକୁ ଯାଉଥା'ନ୍ତି ଓ ତାଙ୍କୁ ନିଜ ମନକଥା ଜଣାଉ-ଥା'ନ୍ତି । ସାଧୁ ଆଖି ଖୋଲି ଟିକିଏ ହସି ସେ-ମାନଙ୍କୁ କିଛି କୁହନ୍ତି ଓ ପରେ ପୁଣି ଆଖି ବନ୍ଦ କରିଦିଅନ୍ତି । ଗୋବିନ୍ଦ ସେଠାରେ ତା' କୁକୁରଟିକୁ ଧରି ପହଞ୍ଚିଲା ଓ ସାଧୁଙ୍କୁ ପ୍ରଣାମ କରି ଗୋଟାଏ ପାଖକୁ ଠିଆ ହେଲା । କିନ୍ତୁ କୁକୁରଟା ସାଧୁଙ୍କ ଶିଷ୍ୟମଣ୍ଡଳୀଙ୍କୁ ଦେଖି ଟିକେ ଗୁଁ ଗୁଁ ହେଲା । ସାଧୁବାବା ଆଖି ଖୋଲନ୍ତେ ଗୋବିନ୍ଦ କହିଲା, "ସାଧୁଜୀ, ଆପଣ କୃପାକରି ଏହାକୁ କ୍ଷମା କରନ୍ତୁ । କୁକୁରଟା କ'ଣ ଜାଣେ ।" ଗୋବିନ୍ଦ କହିଲା ।

"ବେଟା, ତୁମେ କ'ଣ ଚାହଁ ?"



ଗୋବିନ୍ଦ ଲଜ୍ଜାବନତ ମୁଖରେ ଧୀର ସ୍ୱରରେ କହିଲା "ସାଧୁଜୀ, ମୁଁ ବିବାହ କରିବାକୁ ଚାହେଁ । କେତେ ଦିନରୁ ମୋର ଏ ଇଚ୍ଛା ଅଛି ପୂରଣ ହେଉ ନାହିଁ ।

ଶିଷ୍ୟମାନେ ଗୁରୁଙ୍କୁ କିଛି ଗୋଟିଏ ଇସାରା ଦେଲେ; ଗୁରୁ କହିଲେ, "ଇଏ ତ ସାଧାରଣ କଥା, କିଛି ଚିନ୍ତା ନାହିଁ । ମୁଁ ନିଜେ ତୁମର ବିବାହ କରାଇବି ।"

ସମସ୍ତଙ୍କର ଇଚ୍ଛାପ୍ରକାଶ ହେବା ପରେ ସମସ୍ତେ ଚୁପ୍‌ଚାପ୍ ବସିଲେ । ତା'ପରେ ସାଧୁ-ବାବା ଉଠି ଠିଆ ହେଲେ ଓ ବକ୍ତୃତା ଦେବାକୁ ଲାଗିଲେ—

"ଗ୍ରାମରେ ଥିବା ପ୍ରେତର ଭୟ ସମ୍ପର୍କରେ ଆଜି ଦେବତାମାନେ ଶେଷରେ ସ୍ୱୀକାର କରି-



ଛନ୍ତି ଯେ ସେମାନେ ଗ୍ରାମକୁ ସେଥିରୁ ମୁକ୍ତ କରିବେ । କିନ୍ତୁ ଆସନ୍ତା ଶୁକ୍ରବାର ପର୍ଯ୍ୟନ୍ତ ଗ୍ରାମକୁ ଚୋର ଉପଦ୍ରବର କଷ୍ଟ ଭୋଗିବାକୁ ପଡ଼ିବ । ତା'ପରେ ଏଠାରୁ ଚୋରମାନେ ଚାଲିଯିବେ ଆଉ କେବେ ବି ଏ ଗାଁକୁ ଆସିବେ ନାହିଁ, ଯାହାପରେ ବହୁତ ଭଲ ଦିନ ଆସୁଛି ବୋଲି ଦେବତାମାନେ କହିଲେ ।"

ତା'ପରେ ଲୋକେ ନିଜ ନିଜ ଘରକୁ ଚାଲିଗଲେ । ଗୋବିନ୍ଦ ମନରେ ସନ୍ଦେହ ହେଲା ଯେ ସାଧୁଜୀ ବୋଧେ କିଛି ଗୋଟାଏ ମିଥ୍ୟାନାଟକ ତିଆରି କରୁଛନ୍ତି ।

ସେଇଦିନ ରାତିରେ ଗୋବିନ୍ଦ ବରଗଛର ଟିକେ ଦୂରରେ ଗୋଟିଏ ମଣ୍ଡପ ପଛରେ ଲୁଚି ରହିଲା । ଅଧରାତି ବେଳକୁ ତିନିଜଣ ବଳିଷ୍ଠ ଲୋକ ତିନିଟା ବଡ଼ ବଡ଼ ଗଣ୍ଠିଲି ଧରି ସାଧୁଜୀଙ୍କ ପାଖରେ ପହଞ୍ଚିଲେ । ଗୋବିନ୍ଦ ଦେଖିଲା ସେମାନେ ପୂର୍ବଦିନ ସାଧୁଜୀଙ୍କ ପାଖରେ ଶିଷ୍ୟ ସାଜି ବସିଥିଲେ । ସେମାନଙ୍କୁ ଦେଖି ସାଧୁଜୀ ଉଠି ଠିଆ ହୋଇ ପଡ଼ିଲେ । ତାଙ୍କ ଆସନ ତଳୁ ଏକ ଢାଙ୍କୁଣି କାଢ଼ି ଦିଆଗଲା । ଚୋରମାନେ ଆଣିଥିବା ସୁନା, ରୂପା ଓ ଟଙ୍କା ସବୁ ସେଇଠି ଅଜାଡ଼ି ଦେଲେ । ତା'ପରେ ଢାଙ୍କୁଣୀ ବନ୍ଦ କରି ଦିଆଗଲା । ତା'ପରେ ସମସ୍ତେ ମିଶି ମଦ ଓ ମାଂସ ଖାଇ ନାଚକୁଦ କଲେ ।

ଏସବୁ ଦେଖି ଗୋବିନ୍ଦର ରକ୍ତ ଗରମ ହୋଇଗଲା । ହଠାତ୍ ତ କିଛି କରିପାରିବ ନାହିଁ । ତେଣୁ ଚୁପ୍ ଚାପ୍ ସେଠୁ ଖସିଯାଇ ଘରକୁ ଯାଇ ଶୋଇଗଲା ।

ଏଥିପାଇଁ କ'ଣ କରାଯାଇ ପାରିବ ସେଇ କଥା କେବଳ ଗୋବିନ୍ଦ ଭାବିବାରେ ଲାଗିଲା । ସାଧୁଜୀଙ୍କୁ ଚୋର କହିଲେ ଲୋକ ମାନିବେ ନାହିଁ । ଆହୁରି ମଧ୍ୟ ତାକୁ ପିଟି ପକାଇବେ । ତେଣୁ ଗୋଟିଏ ନାଟକ କରିବାକୁ ହେବ ।

ସକାଳ ହେଉ ହେଉ ଗୋବିନ୍ଦ ଘର ଘର ବୁଲି ଖବର ଦେଲା ଯେ, "ଆଜି ସାଧୁଜୀଙ୍କୁ

ଦେଖିବାକୁ ହିମାଳୟରୁ ଅନେକ ସାଧୁ ଆସୁଛନ୍ତି । ତେଣୁ ସାଧୁଜୀ ଆଦେଶ କରିଛନ୍ତି ଯେ ସେମାନଙ୍କ ରହିବା ପାଇଁ କେତୋଟି କୁଟୀର ବନାଇବାକୁ ହେବ । ତେଣୁ ଆପଣମାନେ ଶୀଘ୍ର କୋଦାଳ, କଟୁରି ପ୍ରଭୃତି ଧରି ବାହାରି ଆସନ୍ତୁ । ଡେରି ହେଲେ ସାଧୁଜୀ ରାଗିବେ ।"

ଗ୍ରାମ ଲୋକମାନେ, କୁରାଢ଼ି, କୋଦାଳ, କଟୁରିସବୁ ଧରି ତାଙ୍କ ଆଡ଼କୁ ଆସୁଥିବାର ଦେଖି ସାଧୁଜୀ ଟିକିଏ ଘାବରେଇଗଲେ । ସମସ୍ତଙ୍କ ଆଗରେ ଗୋବିନ୍ଦ ତା'ର କୁକୁର ଧରି ଆସୁଥିବାର ଦେଖି ସାଧୁଜୀ ଆହୁରି ଡରିଗଲେ । ଦେଖୁ ଦେଖୁ ଲୋକମାନେ ଗୁରି ପାଖରେ ଗଦା ହୋଇ ଗଲେ । ଲୋକମାନେ ମଧ୍ୟ ଆଶ୍ଚର୍ଯ୍ୟ ହେଲେ ଯେ ସାଧୁଜୀ ସେମାନଙ୍କୁ ଦେଖି ଥରୁଛନ୍ତି କାହିଁକି ?

ଗୋବିନ୍ଦ ବିଳମ୍ବ ନ କରି ସାଧୁଜୀଙ୍କ ପାଖକୁ ଯାଇ କହିଲା, "ସାଧୁଜୀ, ଆପଣଙ୍କ ରହସ୍ୟ ପଦାରେ ପଡ଼ିଗଲାଣି, ଏମାନେ ଆପଣମାନଙ୍କୁ ମାରିବା ପାଇଁ କଟୁରି ଇତ୍ୟାଦି ଧରି ଆସିଛନ୍ତି ।" ଏକଥା କହି ସେ ସାଧୁଙ୍କ ଦାଢ଼ି ଧରି ଟାଣି ଦେଲା । ତାହା ଥିଲା ନକଲି ଦାଢ଼ି । ତେଣୁ ଗୋବିନ୍ଦ ହାତରେ ଉଠିଆସିଲା । ତା'ପରେ ଗୋବିନ୍ଦ ଶିଷ୍ୟମାନଙ୍କର ଦାଢ଼ି ମଧ୍ୟ ଟାଣି ପକାଇଲା ।

ଏସବୁ ଦେଖି ଲୋକମାନେ ସବୁ ବୁଝିଗଲେ ଓ ଖୁବ୍ ରାଗିଗଲେ । ସେମାନେ ନକଲି ସାଧୁମାନଙ୍କୁ ଧରି ଖୁବ୍ ପିଟିଲେ । କିନ୍ତୁ ଗୋବିନ୍ଦହିଁ ସେମାନଙ୍କୁ ବନ୍ଦ କଲା । ଆସନ ତଳେ ଥିବା ସାରା ଧନ ଗାଁର ଭଦ୍ରଲୋକମାନଙ୍କୁ ଗୋବିନ୍ଦ ଦେଖାଇଲା । ଯିଏ ଯାହାର ଗହଣା ପ୍ରଭୃତି ବାଛି ନେଲେ । ଗ୍ରାମବାସୀମାନେ ଆନନ୍ଦରେ କୋଳାହଳ କଲେ । ସାଧୁଜୀ ଓ ତାଙ୍କ ଶିଷ୍ୟମାନେ ଯେତେବେଳେ କାରାଗାରକୁ ଗୁଲଗଲେ ଗୋବିନ୍ଦ ଅନ୍ୟ ଗାଁ ଆଡ଼େ ଗୁଲିଲା ।





# ଭୁଲମନ

**ମା**ଧବ ଗୁପ୍ତ ନାମରେ ଜଣେ ଲୋକ ଥାଏ; ସେ ବଡ଼ କ୍ରୋଧୀ । ତା' ସ୍ତ୍ରୀ ସତ୍ୟବତୀ ଅତ୍ୟନ୍ତ ଅନ୍ୟମନସ୍କ, ସବୁକଥା ଭୁଲିଯାଏ । ସ୍ତ୍ରୀର ଭୁଲିପଣିଆ ଯୋଗୁ ତା'ର କ୍ରୋଧ ଆହୁରି ବଢ଼ିଗଲା ।

ଦିନେ ସକାଳୁ ସକାଳୁ ମାଧବ ସ୍ତ୍ରୀକୁ ଡାକି ଗୁଡ଼ିଲା । ସେତେବେଳେ ଚୁଲି ଉପରେ ଦୁଧହାଣ୍ଡି ଉତୁରିବାକୁ ବସିଲାଣି । ଯୁଆଡ଼େ ସ୍ୱାମୀ ଡାକୁଛି । କିନ୍ତୁ ସତ୍ୟବତୀ ଅନ୍ୟମନସ୍କ ହୋଇ ବସିରହିଥାଏ ।

ମାଧବ ରାଗି ଚିତ୍କାର କରି ରୋଷେଇ ଘରକୁ ଆସିଲା ଓ କହିଲା, "ତୁମର ଅନ୍ୟମମସ୍କ ସ୍ୱଭାବ ଯୋଗୁ ମୋ ଜୀବନ ଅତିଷ୍ଠ ହୋଇପଡ଼ିଲାଣି । ଯାହା ହେଉ ଶୁଣ, "ଏ ଓଳି ମୁଁ ଆର ଗାଁକୁ ଯିବି । ମୋ ପାଇଁ ଖାଦ୍ୟ ତିଆରି କରିବ ନାହିଁ । ରାତିରେ ଟିକେ ଡେରିରେ ମୁଁ ଫେରିବି ।"

ସତ୍ୟବତୀ ମଥା ହଲାଇ 'ହଁ' ଭରିଲା । ଟିକେ ପରେ ପଚାରିଲା, "ଏ ଓଳି କ'ଣ ତରକାରି ହେବ କିଛି ତ କହିଲ ନାହିଁ ?"

ମାଧବ ରାଗରେ ପାଗଳ ଭଳି ହୋଇ କହିଲା, "ମୁଁ ପରା ଏବେ କହିଲି ଯେ ମୁଁ ଅନ୍ୟ ଗାଁକୁ ଯାଉଛି । ଯାହା କିଛି କରିବ ରାତିକୁ କରିବ, ବୁଝିଲ ?" ଏ କଥା କହି ସେ ଘରୁ ବାହାରିଗଲା ।

ମାଧବ ଯିବା ପରେ ଅଳ୍ପ କିଛି ତିଆରି କରି ସେ ଖାଇନେଲା ଓ ପରେ ସନ୍ଧ୍ୟା ପର୍ଯ୍ୟନ୍ତ ଶୋଇଗଲା । ସନ୍ଧ୍ୟାବେଳେ ଉଠି ତା'ର ସାଙ୍ଗ କାମାକ୍ଷୀ ଘରକୁ ଯାଇ ଗପ କଲା ।

କାମାକ୍ଷୀ କହିଲା—"ତୁ ତ କହୁଛୁ ତୋ ସ୍ୱାମୀ ଗାଁରେ ନାହାନ୍ତି । ତେଣୁ ତୁ ଏଇଠି ଆଜି ରାତିଟା ଖାଇ ଶୋଇପଡ଼ ।"

ମାଧବର ସେହିଦିନ ଫେରିବା କଥା ଭୁଲିଯାଇ ସେ ସେଇଠି ଖାଇ ଶୋଇଗଲା । ଅନେକ ସମୟ ପରେ ମାଧବ ଘରକୁ ଲେଉଟି ଆସିଲା ।

ଘରେ ତାଲା ପଡ଼ିଛି । ସେ ଖୁବ୍ ରାଗିଗଲା ଓ ଦାଣ୍ଡ ଅଗଣାରେ ଟହଲ ମାରି ବୁଲିବାକୁ ଲାଗିଲା ।

ଅଧାରାତି ହୋଇଗଲା । କିନ୍ତୁ ମାଧବ ସେହିପରି ଦାଣ୍ଡ ଅଗଣାରେ ବୁଲୁଥାଏ । ଏହି ସମୟରେ ଚୋରଟିଏ ଆସି ସେଠାରେ ପହଞ୍ଚିଲା । ମାଧବକୁ ଏପରି ବ୍ୟସ୍ତ ହୋଇ ବୁଲୁଥିବାର ଦେଖି ଭାବିଲା ଇଏ ବି ଆଉ ଗୋଟିଏ ଚୋର । ତେଣୁ ସେ ପାଖକୁ ଯାଇ ମାଧବର ପିଠି ଥାପୁଡ଼ାଇ କହିଲା, "ତୁମେ ଘର ଭିତରକୁ ଯିବାକୁ ଚାହୁଁଛ ନା ?"

ମାଧବ ରାଗିଯାଇ କହିଲା, "ଆବେ, ଦ୍ୱାରରେ ତାଲା ପଡ଼ିଛି ମୁଁ ଭିତରକୁ ଯିବି କିପରି ?"

"ମୁଁ ସେ ତାଲାକୁ ନିମିଷକେ ଖୋଲିଦେବି । ତୁମେ ଦେଖୁଥାଅ, କାଳେ କିଏ ଆସିଯିବ । ଯାହାକିଛି ମିଳିବ ଆମେ ଦୁହେଁ ସମାନ ଭାଗରେ ବାଣ୍ଟିନେବା ।" ଚୋର କହିଲା ଓ ନକଲି ଚାବିରେ ଘର ଖୋଲି ଭିତରକୁ ପଶିଗଲା ।

ମାଧବ ମଧ୍ୟ ଚୋରର ପଛେ ପଛେ ଘରେ ପଶିଲା । ସେତେବେଳକୁ ଚୋର ଟଙ୍କାପଇସା ଓ ଅଳଙ୍କାର ଥିବା ଘର ଭିତରକୁ ଯାଇ ଚୋରି କରିବା ଆରମ୍ଭ କରିଛି । ମାଧବ ବାହାରୁ ଚଟ୍ କରି କବାଟ ବନ୍ଦ କରି ଶିକୁଳି ଲଗାଇ ଦେଲା । ତା'ପରେ କହିଲା, "ଆରେ ବୋକା ଚୋର, ତୁ ମୋ'ର ଘର ଲୁଟିନେବାକୁ ଚାହୁଁଥିଲୁ ନା, ହେଉ ହେଉ, ଟିକେ ସକାଳ ହୋଇଯାଉ ମୁଁ ତୋ କଥା ବୁଝିବି ।" ତା'ପରେ ସେ ନିର୍ଭୟରେ ନିଜ ଶୋଇବା ଘରକୁ ଯାଇ ଶୋଇଗଲା । ଏଇ ଗୋଳମାଳ ମଝିରେ ସେ ଭୁଲିଗଲା ଯେ ଦାଣ୍ଡଘରର କବାଟ ଖୋଲା ରହିଛି ।



ରାତିଅଧ ବେଳକୁ ହଠାତ୍ ସତ୍ୟବତୀର ନିଦ ଭାଙ୍ଗିଗଲା ଓ ତା'ର ମନେ ପଡ଼ିଲା ଯେ ମାଧବ ରାତିରେ ଫେରିବାକୁ କହିଯାଇଥିଲା । ସେ ତତ୍‌କ୍ଷଣାତ୍ କାମାକ୍ଷୀର ମଂନା ନମାନି ଘରକୁ ଚାଲିଲା । ଦାଣ୍ଡଘର କବାଟ ଖୋଲା ଦେଖି ଭାବିଲା ଯେ ବୋଧେ ସେ କବାଟ ବନ୍ଦ କରିବାକୁ ଭୁଲିଯାଇଛି ।

ଚୋର ଝରକାର ବାହାରକୁ ଚାହିଁଥିଲା । ସତ୍ୟବତୀ ଘର ଆଡ଼କୁ ଆସୁଥିବାର ଦେଖି ତାକୁ ଡାକି କହିଲା, "ଜଲଦି କବାଟ ଖୋଲିଦିଅ ।" ସତ୍ୟବତୀ ଭାବିଲା ବୋଧେ ମାଧବ ଘର ଭିତରୁ କଥା କହୁଛି । ତେଣୁ କବାଟ ଖୋଲି ଦେଉ ଦେଉ କହିଲା, "ଆରେ ! ତୁମେ ଘର ଭିତରେହିଁ ରହିଛ ? ମୁଁ ଭାବିଥିଲି ଯେ ତୁମେ ଅନ୍ୟ ଗାଁକୁ ଯାଇଛ । ମୁଁ ଜାଣିନାହିଁ କେତେବେଳେ ଏ ଘରର ଶିକୁଳି ଲଗାଇ ଦାଣ୍ଡଘର ଖୋଲି ଚାଲିଯାଇଛି । ଧିକ୍ ମୋର ଭୁଲାପଣିଆ ।"

ଚୋର ସେ ଘର ଭିତରୁ ତୀର ବେଗରେ ଛୁଟି ପଳାଇଲା । ଧରା ପଡ଼ିଯାଇଥିଲା ବୋଲି ଭୟ ପାଇ କିଛି ଚୋରାଇ ପାରିନାହିଁ । ଓଲଟା ଏ ଘରକୁ ଆସିବା ଆଗରୁ ଯାହା ଚୋରି କରି ଅନ୍ୟଲୋକ ଘରୁ ଆଣିଥିଲା ତାକୁ ବିକଳରେ ଛାଡ଼ି ପଳାଇଛି ।

ସତ୍ୟବତୀ ଚୋରର ଟଙ୍କାସୁନାପୂର୍ଣ୍ଣ ଥଳି ଦେଖି ବୁଝିପାରିଲା ନାହିଁ ସେଇଟା କୁଆଡ଼ୁ ଆସିଲା । ତା'ପରେ ସେ ଘର ଭିତରକୁ ଯାଇ ମାଧବକୁ ଉଠାଇ ପଚାରିଲା, "ଶୁଣ, ଏ ଧନରତ୍ନ ପୂର୍ଣ୍ଣ ଥଳି ତୁମେ କେଉଁଠୁ ନେଇଆସିଲ ?

ମାଧବ ଭାବିଲା, ସତ୍ୟବତୀ ରାତିରେ ଘରକୁ ଫେରି ନ ଥିଲା, ପୁଣି ଚୋରକୁ ଖୋଲିଦେଲା ଓ ମାଧବକୁ ହଇରାଣ କଲା । ଏଇ ତିନି ଅପରାଧରେ ତାକୁ ପିଟିବା ଉଚିତ । କିନ୍ତୁ ସତ୍ୟବତୀ ହାତରେ ଥଳିଟି ଦେଖି ଖୁସୀ ହୋଇଗଲା ଓ ଜୀବନରେ ପ୍ରଥମଥର ପାଇଁ ସତ୍ୟବତୀର ଭୁଲାପଣକୁ ପ୍ରଶଂସା କଲା । କାରଣ ଚୋରକୁ ଗ୍ରାମବାସୀଙ୍କୁ ଦେଇଥିଲେ ଥଳିଟି କିନ୍ତୁ ତାକୁ ମିଳି ନ ଥା'ନ୍ତା ।



# ମୂକ ସାକ୍ଷ୍ୟ

ଜଣେ ବ୍ୟବସାୟୀ ଘୋଡ଼ା ଉପରେ ବସି ଯାଉ ଯାଉ ଖରାବେଳେ ଗୋଟିଏ ଗାଁ ଶେଷରେ ପୋଖରୀଟିଏ ଦେଖି ସେଇଠି ବିଶ୍ରାମ କଲା । ଘୋଡ଼ାଟିକୁ ପୋଖରୀ କୂଳ ଗଛରେ ବାନ୍ଧି ଗାଧୋଇ ଗଲା । ଠିକ୍ ସେହି ସମୟରେ ଅନ୍ୟ ଜଣେ ଯାତ୍ରୀ ଆସି ତା'ର ଦୁର୍ବଳିଆ ଘୋଡ଼ାଟିକୁ ସେଇ ଗଛରେ ବାନ୍ଧିଲା ।

ପ୍ରଥମ ଯାତ୍ରୀଟି କହିଲା, "ମୋ ଘୋଡ଼ାଟି ଦୁଷ୍ଟ, ତେଣୁ ତୁମ ଘୋଡ଼ାଟି ଅନ୍ୟ ଗଛରେ ବାନ୍ଧ ।"

ଦ୍ୱିତୀୟ ଯାତ୍ରୀଟି କିଛି ନଶୁଣି ସେଇ ଗଛରେ ବାନ୍ଧିଲା । ଫଳରେ ଦୁଇ ଘୋଡ଼ା ଦଉଡ଼ି ଛିଣ୍ଡାଇ ଲଢ଼ାଲଢ଼ି ହେଲେ ଓ ଶେଷରେ ଦୁର୍ବଳିଆ ଘୋଡ଼ାଟି ମରିଗଲା ।

ଦ୍ୱିତୀୟ ଯାତ୍ରୀ ପ୍ରଥମଠାରୁ ତା' ଘୋଡ଼ାବାବଦ କ୍ଷତିପୂରଣ ଦାବି କଲା । ଦୁହେଁ ଗ୍ରାମପଞ୍ଚାୟତ ପାଖକୁ ଗଲେ ନ୍ୟାୟ ପାଇଁ । ସରପଞ୍ଚ ପ୍ରଥମ ଯାତ୍ରୀକୁ ପଚାରିଲେ, "ତୁମେ କ'ଣ କୈଫିୟତ୍ ଦେଉଛ ?"

ପ୍ରଥମ ଯାତ୍ରୀ କିଛି ନ କହି ଖାଲି ବଲବଲ କରି ଚାହିଁ ରହିଲା ।

ସରପଞ୍ଚ କହିଲେ, "ବାବୁ, ଦେଖ, ଇଏ ତ ମନେ ହେଉଛି ଆଜନ୍ମ ମୂକ । ତୁମେ ତା' ବିରୁଦ୍ଧରେ କ'ଣ ଅଭିଯୋଗ ଆଣିଛ ?"

"କ'ଣ ହୋଇଛି ? ସେ ମୂକ ? ସେଇ ନା ଚିତ୍କାର କରି ମୋତେ କହିଲା, "ମୋ ଘୋଡ଼ା ଦୁଷ୍ଟ ! ତୁମେ ତୁମ ଘୋଡ଼ାଟି ଅନ୍ୟ କୌଣସି ଗଛରେ ବାନ୍ଧ ।" ଦ୍ୱିତୀୟ ଯାତ୍ରୀ କହିଲା ।

ନିଜ ଉତ୍ତରରେହିଁ ନିଜ ଅଭିଯୋଗ ଖଣ୍ଡନ ହୋଇଗଲା ।





# ଅଦ୍ଭୁତ ସର୍ତ୍ତ

ଗୋଟିଏ ଗାଁରେ ଜଣେ ଜମିଦାର ଥିଲେ । କ୍ରମେ ତାଙ୍କ ଜମିଦାରୀ ଦେଖାଶୁଣା ଅଭାବରେ ନଷ୍ଟ ହେଉଥାଏ । ତାଙ୍କର ଭାଗ୍ୟବତୀ ନାମକ ଏକ ପରମା ସୁନ୍ଦରୀ ନାତୁଣୀ ବ୍ୟତୀତ ସଂସାରରେ ନିଜର ବୋଲି ଆଉ କେହି ନ ଥା'ନ୍ତି । ଅନେକ ଯୁବକ ଭାଗ୍ୟବତୀଙ୍କୁ ବିବାହ କରିବାକୁ ମନ ବଳାଇଲେ । କିନ୍ତୁ ଜମିଦାର ସେମାନଙ୍କ ଆଗରେ ଏକ ସର୍ତ୍ତ ରଖିଥା'ନ୍ତି ଯେ ଯିଏ ତିନି ଦିଗରୁ ତିନୋଟି ଆଶ୍ଚର୍ଯ୍ୟ ଜିନିଷ ଆଣିବ, ସେହିଁ ଭାଗ୍ୟବତୀଙ୍କୁ ବାହା ହେବ । କେତେକ ଯୁବକ ସେ କଠିନ କାର୍ଯ୍ୟ କରିବାକୁ ସାହସ କଲେ କିନ୍ତୁ ସଫଳ ହେଲେ ନାହିଁ । ଅନ୍ୟ ଯୁବକମାନେ ସେସବୁ ଦେଖି ହତାଶ ହୋଇ ଫେରିଯା'ନ୍ତି । ଏପରି ଅନେକ ଦିନ ବିତିଗଲା ।

ସେହି ଗାଁରେ ଜୟନ୍ତ ନାମରେ ଜଣେ କ୍ଷତ୍ରିୟ ଯୁବକ ଥାଏ । ସେ ଭାଗ୍ୟବତୀଙ୍କୁ ବିବାହ କରିବ ବୋଲି ମନ ମଧ୍ୟରେ ନିଶ୍ଚିତ ହୋଇ ସେଠାକୁ ଗଲା । ଅଣ୍ଟାରେ ତରବାରି ଝୁଲାଇ ଘୋଡ଼ା ଚଢ଼ି ସେ ଜମିଦାରବୁଢ଼ା ପାଖକୁ ଗଲା ।

ଜୟନ୍ତକୁ ଦେଖି ଜମିଦାର କହିଲେ, "ତୁମେ ଜାଣିଛ ନା ନାହିଁ, ମୋ ନାତୁଣୀକୁ ବିବାହ କରିବାକୁ ହେଲେ ତିନି ଦିଗରୁ ତିନୋଟି ଅଦ୍ଭୁତ ଜିନିଷ ଆଣିବାକୁ ହେବ ?"

"କ'ଣ ସବୁ ସେ ଜିନିଷ ?" ଜୟନ୍ତ ପଚାରିଲା ।

"ତୁମେ ସିଧା ଦକ୍ଷିଣ ଦେଶକୁ ଯାଇ ଦେଖିବ ଗୋଟିଏ ପୁରୁଣା ଭଙ୍ଗା ମନ୍ଦିର । ଶୁଣାଯାଏ ତା' ଭିତରେ ମାଟି ତଳେ ଗୋଟାଏ ଗୁମ୍ଫା ଅଛି । ତା' ଭିତରେ ଅଛି ଏକ ଡମ୍ବରୁ । ତାକୁ ବଜାଇଲେ କେତେଜଣ ଲୋକ ଆସି ପହଞ୍ଚିବେ ଓ ସେମାନଙ୍କୁ ଯାହା କାମ ବତାଇଲେ ସେମାନେ କରିବେ । ପ୍ରଥମେ ତୁମେ ସେ ଡମ୍ବରୁ ନେଇ-ଆସ ପରେ ଅନ୍ୟ ଦୁଇଟି ଜିନିଷ କଥା ତୁମକୁ କହିବ ।" ଜମିଦାର ବୁଝାଇଲେ ।

ଜୟନ୍ତ ଜମିଦାରଙ୍କ ଅନୁମତି ନେଇ ଦକ୍ଷିଣ ଦିଗକୁ ଗଲା । ସେ ଦଶଦିନ ପରେ କ୍ଲାନ୍ତ ହୋଇ ଫେରିଆସିଲା । ଆଜିପର୍ଯ୍ୟନ୍ତ ଯାଇଥିବା ଯୁବକମାନେ କେହି ଫେରି ନ ଥିଲେ । ତେଣୁ ଜୟନ୍ତକୁ ଦେଖି ସେ ପଚାରିଲେ, "କ'ଣ ତୁମେ ଡମ୍ବରୁ ନେଇ ଆସିଲ ?"

ଜୟନ୍ତ ତତ୍‌କ୍ଷଣାତ୍ ଥଳିରୁ ଡମ୍ବରୁଟିଏ ବାହାର କରି ଜମିଦାରଙ୍କ ହାତରେ ଦେଲା । ଜମିଦାର ଖୁସି ହୋଇ ଡମ୍ବରୁଟିକୁ ନିରୀକ୍ଷଣ କରି ଦେଖିଲେ ଓ ପରେ ବଜାଇଲେ । ବଜାଇବା ମାତ୍ରେ କେଉଁଠୁ ଦଶଜଣ ଲୋକ ଦୌଡ଼ିଆସି ତାଙ୍କ ସାମନାରେ ଠିଆ ହୋଇଗଲେ ଓ ଜମିଦାରଙ୍କୁ ପଚାରିଲେ, "ମାଲିକ, କୁହନ୍ତୁ ଆପଣଙ୍କ ଆଦେଶ କ'ଣ ?"

"ତୁମେମାନେ ମୋ ବଗିଚାକୁ ସୁନ୍ଦର କରି ଫସଲ ଲଗାଅ ।" ଜମିଦାର ସେମାନଙ୍କୁ ଆଦେଶ କଲେ । ସଙ୍ଗେ ସଙ୍ଗେ ଦଶଜଣ ଲୋକ ବଗିଚାକୁ ଚାଲିଗଲେ । "ବର୍ତ୍ତମାନ ଆପଣ ଦ୍ୱିତୀୟ ଜିନିଷଟିର ବିବରଣୀ ଦିଅନ୍ତୁ ।" ଜୟନ୍ତ କହିଲା ।

"ତୁମେ ବର୍ତ୍ତମାନ ପଶ୍ଚିମ ଦିଗକୁ ଯାଇ ଦେଖିବ ଗୋଟିଏ ଭଙ୍ଗା ମନ୍ଦିର । ତା' ଭିତରେ ମାଟି ତଳେ ଏକ ଗୁମ୍ଫା ଭିତରେ ଗୋଟିଏ ତାବିଜ ଅଛି । ତାକୁ ହାତରେ ବାନ୍ଧିବା ଲୋକ ବାର୍ଦ୍ଧକ୍ୟରୁ କ୍ରମେ ଯୌବନ ପ୍ରାପ୍ତ କରେ ।" ଜମିଦାର କହିଲେ ।

ଜୟନ୍ତ ପଶ୍ଚିମ ଦିଗକୁ ଯିବା ବେଳକୁ ବୁଲି ଚାହିଁଲା ଓ ଝରକା ଭିତରୁ ଭାଗ୍ୟବତୀର ବିସ୍ମୟଭାବପୂର୍ଣ୍ଣ ମୁହଁ ଦେଖିପାରିଲା ।

କିଛିଦିନ ପରେ ଜୟନ୍ତ କ୍ଲାନ୍ତ ଦେହ ନେଇ ପହଞ୍ଚିଲା ଓ ଜମିଦାରଙ୍କୁ ତାବିଜଟି ଦେଲା ।



ଜମିଦାର ତାବିଜଟିକୁ ନିଜ ହାତରେ ଧରି କହିଲେ, "ସାବାସ୍ । ତୁମେହିଁ ମୋର ଭାଗ୍ୟବତୀ ପାଇଁ ଉପଯୁକ୍ତ ବର । କିନ୍ତୁ ବର୍ତ୍ତମାନ ଶେଷ କଥାଟି ଅଛି । ତୁମେ ଏଥର ଉତ୍ତର ଦିଗକୁ ଯାଇ ଗୋଟିଏ ଭଙ୍ଗା ମନ୍ଦିରରେ ଥିବା କଥା କହୁଥିବା ଶୁଆକୁ ନେଇଆସ ।"

ଜୟନ୍ତ ଏଥର ମଧ୍ୟ ପଛକୁ ବୁଲି ଝରକା ଆଡ଼େ ଚାହିଁଲା ଓ ଆଶ୍ଚର୍ଯ୍ୟ ଆଖିରେ ତା'ରି ଆଡ଼କୁ ଚାହିଁଥିବା ଭାଗ୍ୟବତୀକୁ ଦେଖିଲା । ତା' ପରେ ସେ ଉତ୍ତର ଦିଗକୁ ଚାଲିଗଲା ।

କିଛି ଦିନ ପରେ ଜୟନ୍ତ କ୍ଲାନ୍ତ ଶରୀର ନେଇ ଫେରିଲା, ହାତରେ ଶୁଆ ଥିବା ଏକ ପଞ୍ଜୁରି । ସେଇଟି ସେ ଜମିଦାରଙ୍କ ହାତରେ ସମର୍ପଣ କଲା ।

"ହେ ଶୁଆ, ମୋର ଶହେଟି ସ୍ୱର୍ଣ୍ଣମୁଦ୍ରା ଦରକାର ।" ଜମିଦାର ଶୁଆକୁ କହିଲେ ।

"କାଲି ସକାଳେ ଆପଣଙ୍କୁ ଶହେ ସ୍ୱର୍ଣ୍ଣମୁଦ୍ରା ମିଳିଯିବ ।" ଶୁଆ ଜବାବ୍ ଦେଲା ।

ଜମିଦାର ସେଦିନ ରାତିରେ ଜୟନ୍ତକୁ ଅତିଥି କରି ରଖିଲେ । ପରଦିନ ସକାଳୁ କବାଟ ଖୋଲି ଦେଖିଲେ ତାଙ୍କ ଦୁଆର ପାଖରେ ଶହେ ସ୍ୱର୍ଣ୍ଣମୁଦ୍ରାପୂର୍ଣ୍ଣ ଥଳିଟିଏ ରହିଛି । ସେ ଏତେ ଖୁସୀ ହୋଇଗଲେ ଯେ ପରଦିନହିଁ ଭାଗ୍ୟବତୀକୁ ଜୟନ୍ତ ସହିତ ବିବାହ କରିଦେଲେ । ଜୟନ୍ତ ଭାଗ୍ୟବତୀକୁ ନେଇ ତା' ଘରକୁ ଚାଲିଗଲା ।

କିଛିଦିନ ଚାଲିଗଲା । ଜମିଦାର ଦିନେ ଶୁଆକୁ କହିଲେ, "ହେ ଶୁଆ, ମୋର ଏବେ ହଜାରେ ସ୍ୱର୍ଣ୍ଣମୁଦ୍ରା ଦରକାର ।"

"ଏକ ହଜାର ସ୍ୱର୍ଣ୍ଣମୁଦ୍ରା ମୁଁ କେଉଁଠୁ ଆଣିବି ? ଜୟନ୍ତ ତ ଏସବୁ ନାଟକ କରିଥିଲା । ତା'ରି ଘରେ ପାଳିଥିବା ଶୁଆ ହେଉଛି ମୁଁ ।" ଏ କଥା କହି ଶୁଆ ଉଡ଼ି ଚାଲିଗଲା ।

ଜମିଦାର ହତାଶ ହୋଇଗଲେ । ତା'ପରେ ସେ ଡମ୍ବରୁ ବଜାଇଲେ । ଡମ୍ବରୁ ଫାଟିଗଲା ସିନା କାହାର ବି ଦେଖା ନାହିଁ । ତା'ପରେ ସେ ହାତରେ ବାନ୍ଧିଥିବା ତାବିଜଟି ବାହାର କରି ତଳେ କଚାଡ଼ି ଭାଙ୍ଗିଦେଇ ବସିପଡ଼ିଲେ ଓ କହିଲେ, "ହାୟ୍ ହାୟ୍, ଏ କି ଠକାମି ।"





# ମୃତର ସାକ୍ଷ୍ୟଦାନ

ଏକ ଗାଁରେ ଥିଲେ ରଘୁନାଥ ନାମକ ଜଣେ ପଣ୍ଡିତ । ସେ ଗାଁ ଚଟ୍ଟଶାଳୀରେ ଅବଧାନ ଥିଲେ । ତାଙ୍କ ସତ୍‌ସ୍ୱଭାବ ଓ ନିଷ୍ଠାପରତା ଯୋଗୁ ସମସ୍ତେ ତାଙ୍କୁ ଶ୍ରଦ୍ଧା କରୁଥିଲେ ।

ରଘୁନାଥଙ୍କର ଗୋଟିଏ ବୋଲି ଝିଅ । ନାମ ସୁଲୋଚନା । ଅଳ୍ପ ଦୂରବର୍ତ୍ତୀ ଗୋଟିଏ ଗ୍ରାମରେ ଜଣେ ତରୁଣ ଶିକ୍ଷକଙ୍କ ସହ ସୁଲୋଚନାର ବିବାହ ହୋଇଥାଏ । ବିବାହର ଅଳ୍ପଦିନ ପରେ ସୁଲୋଚନାର ମା' ଇହଧାମ ତ୍ୟାଗ କଲେ । ରଘୁନାଥ ମଝିରେ ମଝିରେ ଯାଇ ଝିଅକୁ ଦେଖି ଆସନ୍ତି । ଝିଅ ଜୁଆଇଁ ମଧ୍ୟ ଆସି ବୃଦ୍ଧ ରଘୁନାଥଙ୍କ ହାଲଚାଲ୍ ବୁଝାସୁଝା କରନ୍ତି ।

ଝିଅ ବିଭା ହୋଇଯିବା ପରେ ରଘୁନାଥଙ୍କର ଆଉ ବିଶେଷ ଖର୍ଚ୍ଚବାର୍ଚ୍ଚ କିଛି ନ ଥାଏ । ସେ ନିଜେ ଅତି ସାଧାସିଧା ଭାବରେ ଚଳନ୍ତି । ମାସ ଶେଷରେ ଯେତେ ପଇସା ବଳେ, ସେତକ ନେଇ ସେ ଗାଁର ସ୍ୱର୍ଣ୍ଣକାର ନକୁଳ ପାଖରେ ଜମା ଦିଅନ୍ତି । ନକୁଳ ସହ ତାଙ୍କର କଥା ହୋଇଥାଏ, ଯଥେଷ୍ଟ ଅର୍ଥ ଜମା ହେଲେ ନକୁଳ ସୁଲୋଚନା ନିମନ୍ତେ ସୁନାହାରଟିଏ ତିଆରି କରିଦେବ ।

ଥରେ ସୁଲୋଚନା ବାପାକୁ ଦେଖିବାକୁ ଆସିଥାଏ । ସେତିକିବେଳେ ରଘୁନାଥ ତାଙ୍କ ଯୋଜନା କଥା ଝିଅକୁ ଜଣାଇଲେ ।

"ବାପା ! ତୁମେ ଧୀରେ ଧୀରେ ବଳହୀନ ହୋଇପଡ଼ୁଛ । ନିଜ ପାଇଁ ଦୈନିକ କିଛି ଦୁଧ ଓ ଫଳମୂଳ ମଗାଇ ଖାଇଲେ ଯିନା ମୁଁ ସେଥିରେ ଖୁସୀ ହୁଅନ୍ତି, ସୁନା ହାରଟାଏ ପିନ୍ଧି ମୁଁ କ'ଣ ପାଇବି ?" ଝିଅ କହିଲା ।

ରଘୁନାଥ ଟିକିଏ କରୁଣ ହସ ହସି କହିଲେ, ଝିଅ ! ତୋ ବିବାହବେଳେ ମୁଁ ମୋ ମନ ମୁତାବକ ଉପହାର ଦେଇପାରିନାହିଁ । ତୋତେ ଗୋଟାଏ ସୁନାହାର ଦେବା ନିମନ୍ତେ ତୋ ମା'ଙ୍କର ବହୁତ ଇଚ୍ଛା ଥିଲା ।"

ରଘୁନାଥ ନକୁଳ ପାଖରେ ଟଙ୍କା ଜମା

ଏ. ସି. ସରକାର, ଯାଦୁକର,




କରିବାକୁ ଆରମ୍ଭ କରିବାର ଦୁଇବର୍ଷ ଉତ୍ତାରୁ ହଠାତ୍ ଗୃହାଳରେ ପାଠ ପଢ଼ାଉଥିବା ବେଳେ ସେ ଛାତିରେ ବେଦନା ଅନୁଭବ କଲେ ଓ ଚେତା ହରାଇ ପଡ଼ିଗଲେ । ଛାତ୍ରମାନେ ବ୍ୟସ୍ତ ହୋଇ ଗାଁ ଲୋକଙ୍କୁ ଡାକିଆଣିଲେ ।

ରଘୁନାଥ ତିନିଦିନକାଳ ଅଚେତ ହୋଇ ରହିଲେ । ଚତୁର୍ଥ ଦିନ ସେ ଆଖି ଖୋଲି ଝିଅକୁ ଦେଖି ଆନନ୍ଦିତ ହେଲାପରି ମନେ ହେଲା । ସେ କିଛି କହିବାକୁ ଉଦ୍ୟତ ହେଲେ, କିନ୍ତୁ କହି ପାରିଲେ ନାହିଁ । ହଠାତ୍ ତାଙ୍କ ପ୍ରାଣବାୟୁ ନିର୍ଗତ ହୋଇଗଲା ।

ଗୃହାଳ ଘରଟି ଭାଙ୍ଗି ପଡ଼ୁଥାଏ । ରଘୁନାଥଙ୍କ ଇଚ୍ଛାଥିଲା ନିଜ ଘରଟିକୁ ଗୃହାଳ ପାଇଁ ଦେଇ ଦେବେ । ସୁଲୋଚନା ସେ ଇଚ୍ଛା ପୂରଣ କଲା । ଘରଟିକୁ ଗୃହାଳ ନିମନ୍ତେ ଗ୍ରାମବାସୀଙ୍କୁ ଅର୍ପଣ କରି ଦେଲା । ସମସ୍ତଙ୍କ ସହଯୋଗରେ ରଘୁନାଥଙ୍କ ଅନ୍ତ୍ୟେଷ୍ଟି କ୍ରିୟା ସୁରୁଖୁରୁରେ ସମାପ୍ତ ହେଲା । କିନ୍ତୁ କେବଳ ଗୋଟିଏ ଲୋକର ଦେଖା ମିଳୁ ନ ଥାଏ । ସେ ହେଲା ନକୁଳ ।

କାମଦାମ ସରିବା ପରେ କେତେ ଜଣ ଗ୍ରାମବାସୀଙ୍କୁ ସାଥିରେ ଧରି ସୁଲୋଚନା ନକୁଳ ଘରେ ପହଞ୍ଚିଲା । ନକୁଳ ବହୁତ ଦୁଃଖିତ ହେବାର ଅଭିନୟ କରି କହିଲା, "କ'ଣ କହିବି ଝିଅ, ପଣ୍ଡିତ ରଘୁନାଥଙ୍କ ପରଲୋକ ସମ୍ବାଦ ଶୁଣି ମୁଁ ଅଧା ମଲା ହୋଇ ରହିଛି । ମୋ ଦେହ ଭଲ ଥିଲେ ମୁଁ ଯାଇ ତୁମମାନଙ୍କୁ ଦେଖି ଆସିଥାନ୍ତି ।"

"ଆପଣଙ୍କ ସହାନୁଭୂତି ହିଁ ମୋତେ ଆଶ୍ୱାସନା ଦେଉଛି । ଶୁଣନ୍ତୁ । ବାପା ପ୍ରତି ମାସ ଆପଣଙ୍କ ପାଖରେ କିଛି କିଛି ଟଙ୍କା ଜମା ରଖୁଥିଲେ । ମୋ ପାଇଁ ହାରଟିଏ ଗଢ଼ାଇ ଦେବା ତାଙ୍କର ଉଦ୍ଦେଶ୍ୟ ଥିଲା । ଆପଣ ବର୍ତ୍ତମାନ ଟଙ୍କାତକ ମୋତେ ଫେରାଇ ଦେବେ ନା ହାର ଦେବେ ?"

"କି ଟଙ୍କା, ଝିଅ ? କି ହାର ? ପଣ୍ଡିତେ ମୋ ସଙ୍ଗରେ ସୁଖ ଦୁଃଖ ହେବାକୁ ଆସୁଥିଲେ, ସତ କଥା । କିନ୍ତୁ ତାଙ୍କ ପାଖରୁ ମୁଁ କପର୍ଦ୍ଦକଟିଏ ସୁଦ୍ଧା ଆଣି ନାହିଁ । ହାର କଥା ମୋତେ ସେ କେବେ କହି ନାହାନ୍ତି ।" ନକୁଳ ସ୍ପଷ୍ଟ କହିଦେଲା ।

"ମୋ ବାପା ତାଙ୍କ ଜୀବନରେ କେବେ ମିଛ କହିଥିବାର କାହାକୁ ଜଣା ନାହିଁ । ମୋତେ

ସେ ହାର ବଦଳରେ ମିଛ କହିଥାନ୍ତେ କାହିଁକି ?" ସୁଲୋଚନା ଦୁଃଖିତ ହୋଇ ପଚାରିଲା ।

"ବାପା ମିଛ କହିଥିଲେ କି ତୁମେ ନିଜେ ମିଛ କହୁଛ ସେକଥା ମୁଁ ଜାଣିବି କିପରି ? ମୁଁ କିନ୍ତୁ ସତ କହୁଛି । ରଘୁନାଥ ପଣ୍ଡିତେ ମୋତେ କେବେ କୌଣସି ଟଙ୍କା ପଇସା ଦେଇ ନାହାନ୍ତି ।" ନକୁଳ ଟିକିଏ ଉତ୍ତେଜିତ କଣ୍ଠରେ କହିଲା ।

ଗାଁ ଲୋକେ ବୁଝିଲେ, ନକୁଳ ସୁଲୋଚନାକୁ ଦଗା ଦେଉଛି । ସେମାନେ ସମସ୍ୱରରେ କହିଲେ, ରଘୁନାଥ ମିଛ କହିବା ଲୋକ ନଥିଲେ କି ସୁଲୋଚନା ସେପରି ଝିଅ ନୁହେଁ । ତା'ଛଡ଼ା ପଣ୍ଡିତେ ନକୁଳ ଜମା ଟଙ୍କା ରଖୁଥିବା କଥା ଅନ୍ୟ ଜଣେ ଦୁଇଜଣ ଗାଁ ଲୋକେ ବି ଜାଣିଥିଲେ । ସେମାନେ ସମସ୍ତେ ଟଙ୍କାତକ ସୁଲୋଚନାକୁ ଦେଇ ଦେବା ନିମନ୍ତେ ନକୁଳକୁ ପରାମର୍ଶ ଦେଲେ । ନକୁଳର କିନ୍ତୁ ଏକ କଥା— ସେ ଟଙ୍କା ନେଇ ନାହିଁ ।

ଲୋକଙ୍କ ପଛରେ ଠିଆ ହୋଇଥିଲା ସୋମନାଥ । ଜଣେ ଗୁଣିଆ ହିସାବରେ ତା'ର ଖ୍ୟାତି ଥିଲା । ସେ ଭୂତ ଛଡ଼ାଇ ପାରୁଥିଲା; ଭୂତଙ୍କ ସହ କଥାବାର୍ତ୍ତା ବି କରି ପାରୁଥିଲା । ସେ ଆଗକୁ ବାହାରି ଆସି କହିଲା, "ସମସ୍ୟା ବେଶ ଜଟିଳ ମନେ ହୁଏ । ସୁଲୋଚନା ମିଛ କହିବା ଝିଅ ନୁହେଁ । ତେଣେ ନକୁଳ ପଣ୍ଡିତଙ୍କଠାରୁ ମାସକୁ ମାସ ଟଙ୍କା ନେଇଥିବାର କୌଣସି ପ୍ରମାଣ ନାହିଁ । ଏଭଳି କ୍ଷେତ୍ରରେ ପଣ୍ଡିତଙ୍କ ଆତ୍ମାକୁ




ପଚାରିବା ଛଡ଼ା ଅନ୍ୟ ଗତି କାହିଁ ?"

"ସେତିକି ହୋଇ ପାରିଲେ ସମସ୍ୟାର ସମାଧାନ ହୋଇଯା'ନ୍ତା !" ସମସ୍ତେ କହିଲେ ।

ଦିନ ସ୍ଥିର ହେଲା । ସନ୍ଧ୍ୟା ବେଳକୁ ସମସ୍ତେ ଆସି ରଘୁନାଥଙ୍କ ପିଣ୍ଡାରେ ଠୁଳ ହେଲେ । ସୋମନାଥ ଗୋଟିଏ ମାଟି ହାଣ୍ଡି ଓ ଢାଙ୍କୁଣି ଆଣି ସମସ୍ତଙ୍କ ଆଗରେ ଥୋଇଲା ଓ କହିଲା, "ପଣ୍ଡିତଙ୍କ ପ୍ରିୟ ଲେମ୍ବୁ ଗଛରୁ କିଛି ଲେମ୍ବୁ ନେଇ ଆସ ।"

ରଘୁନାଥଙ୍କ ଘର ପଛପଟେ ଗୋଟାଏ ଲେମ୍ବୁ ଗଛ ଥିଲା । ବାର ମାସ ସେଥିରେ ଲେମ୍ବୁ ଫଳୁଥିଲା । ପଣ୍ଡିତ ସେ ଲେମ୍ବୁକୁ ବହୁତ ସୁଖ ପାଉଥିଲେ ଓ ସବୁଦିନେ ଖାଉଥିଲେ ।

ତିନି ଚାରିଜଣ ଗ୍ରାମବାସୀ ଦୌଡ଼ି ଯାଇ

ଗୋଟିଏ ଟୋକେଇ ଭର୍ତ୍ତିକରି ଲେମ୍ବୁ ନେଇ ଆସିଲେ । ସୋମନାଥ ସେ ଲେମ୍ବୁତକ କାଟି କାଟି ଲୋକଙ୍କୁ କହିଲା, "ପଣ୍ଡିତଙ୍କ ଆତ୍ମା ଆଖ ପାଖରେ ରହିଛି । ଯଦି ସେ ନକୁଳକୁ ଟଙ୍କା ଦେଇ ନ ଥିଲେ, ତେବେ ସେ ଆମ ଡାକରେ ଆସିବାକୁ ଖାତିର୍ କରିବେ ନାହିଁ । ଯଦି ଟଙ୍କା ଦେଇଥିଲେ, ତେବେ ସେ ନିଶ୍ଚୟ ଆସିବେ ଓ ସେ ଆସିବାର ସଙ୍କେତ ମିଳିବ । ସେ ଏ ଲେମ୍ବୁ ରସ ଭଲ ପାଉଥିଲେ । ତେଣୁ ତାଙ୍କ ଆସିବା ସକାଶେ ଏହା ପଥ ଖୋଲି ଦେବ ।"

ଏହା କହି ସୋମନାଥ ଲେମ୍ବୁତକ ମାଠିଆ ଭିତରେ ଚିପୁଡ଼ି ଦେଲା । ମାଠିଆ ଉପରେ ଖଣ୍ଡିଏ ଲୁଗା ଘୋଡ଼ାଇ ଦେଇ ତା' ମୁହଁ ମାଟି ସହିତରେ ଢାଙ୍କି ଦେଲା । ତା'ପରେ କୌଣସି ମନ୍ତ୍ର ପଢ଼ିବାକୁ ଲାଗିଲା ।

ଅବିଳମ୍ବେ ମାଠିଆ ଭିତରେ କିଛି ହଲଚଲ ହେଉଥିବାର ଜଣାପଡ଼ିଲା । ଲେମ୍ବୁ ରସ ଉଛୁଳି ଆସିବାର ଦେଖାଗଲା । ଫେଣ ଖୁବ୍ ଜୋର୍‌ରେ ବାହାରି ଚାରିଆଡ଼କୁ ବୋହିଗଲା ।

ସେ ଦୃଶ୍ୟରେ ସମସ୍ତେ ଚକିତ ଦେଖାଗଲେ । ନକୁଳ ଥରିବାକୁ ଲାଗିଲା । ସୋମନାଥ ଗମ୍ଭୀର ଭାବରେ କହିଲା, "ପଣ୍ଡିତଙ୍କ ଆତ୍ମା ଆସି ଏହି ସଙ୍କେତ ଦେଉଛି ଯେ ନକୁଳ ପାଖରେ ନିଶ୍ଚୟ ତାଙ୍କ ଟଙ୍କା ଜମା ରହିଛି । ଯଦି ନକୁଳ ଏବେ ମଧ୍ୟ ଏକଥା ଅସ୍ୱୀକାର କରିବ, ତେବେ ପଣ୍ଡିତଙ୍କ ଆତ୍ମା ତା' ଉପରେ ସବାର୍ ହେବ ।"

ନକୁଳ କାନ୍ଦି କାନ୍ଦି ହୋଇ ଟଙ୍କା ରଖିଥିବା କଥା ସ୍ୱୀକାର କଲା । ସାତଦିନ ଭିତରେ ସୁନା-ହାର ଗଢ଼ି ସେ ସୁଲୋଚନାକୁ ଦେଇ ଦେଲା ।

ସୋମନାଥ ଏତିକି ଯାଦୁ କରିଥିଲା : ସେ ମାଠିଆ ଯେଉଁ ଲୁଗାରେ ଢାଙ୍କିଲା, ସେ ଲୁଗାରେ କିଛି ଲୁଗାଧୁଆ ସୋଡ଼ା ଲୁଚାଇ ରଖିଥିଲା । ଧୀର ଭାବରେ ସେ ସୋଡ଼ାଗୁଣ୍ଡତକ ମାଠିଆ ଭିତରେ ଓଜାଡ଼ି ଦେଲା । ଲେମ୍ବୁରେ ସୋଡ଼ା ମିଶିବା ମାତ୍ରେ ରସତକ ଉଛୁଳି ବାହାରି ଆସିବାକୁ ଲାଗିଲା । ଧୂଆଁ ବି ଦେଖାଗଲା । ସେତିକରେ ଗୋଟିଏ ଭୌତିକ ପରିବେଶର ସୃଷ୍ଟି ହେଲା ।





# ବ୍ୟାଧି ବିତାଡ଼ନ

ଶ୍ରୀଧାପୁର ଗ୍ରାମରେ ଥିଲେ ଅନନ୍ତ ଶର୍ମା ନାମକ ପ୍ରବୀଣ ବୈଦ୍ୟ । ଥରେ ସେ ଦୁଇ ତିନି ଦିନ ପାଇଁ ସହରକୁ ଯାଇଥାନ୍ତି । ଗାଁକୁ ଫେରି ଆସି ଶୁଣିଲେ, ଜମିଦାରଙ୍କ କର୍ମଚାରୀମାନେ ଇତି ମଧ୍ୟରେ ତାଙ୍କୁ ବାରମ୍ବାର ଖୋଜିବାକୁ ଆସିଲେଣି । ଜମିଦାର କୁଆଡ଼େ ଗୁରୁତର ଅବସ୍ଥା । ଜ୍ୱର ଛାଡ଼ୁ ନାହିଁ । ଏ ଖବର ପାଇବା ମାତ୍ରେ ବୈଦ୍ୟ ନିଜ ଔଷଧ ପେଟୀ ଧରି ଜମିଦାରଙ୍କ ଘରକୁ ବାହାରି ଗଲେ ।

ଜମିଦାର ଜ୍ୱରଗ୍ରସ୍ତ ହୋଇ ଗୋଟିଏ କୋଠରୀ ଭିତରେ ପଡ଼ିଥାନ୍ତି । ଦାଣ୍ଡ ବଖରାରେ ତାଙ୍କ ବନ୍ଧୁବାନ୍ଧବ ଓ ଗାଁର ବିଶିଷ୍ଟ ଲୋକେ ଉତ୍କଣ୍ଠିତ ଭାବରେ ବୈଦ୍ୟଙ୍କ ବାଟ ଚାହିଁ ବସିଥା'ନ୍ତି ।

ବୈଦ୍ୟ ଝଟପଟ୍ ଜମିଦାରଙ୍କ କୋଠରୀ ଭିତରେ ପଶିଯାଇ ଭିତରୁ କବାଟ ବନ୍ଦ କରିଦେଲେ । ଏକାକୀ ରୋଗୀକୁ ମନଯୋଗ ସହକାରେ ପରୀକ୍ଷା କରିବା ଥିଲା ତାଙ୍କ ରୀତି ।

କିନ୍ତୁ ଦଶ ପନ୍ଦର ମିନିଟ ବିତିଯିବା ପରେ ମଧ୍ୟ କବିରାଜ କବାଟ ନ ଖୋଲିବାରୁ ସଭିଏଁ ଉଦ୍‌ବିଗ୍ନ ହୋଇ ଉଠିଲେ । ଯାହା ହେଉ, କବାଟ ଅଳ୍ପ ଖୋଲି ବୈଦ୍ୟ ଜମିଦାରଙ୍କ ବଡ଼ପୁଅକୁ କହିଲେ, "ଗୋଟିଏ କଲା ଆଣିଲ !" କଲା ଅଣା ହେଲା । ବୈଦ୍ୟ ସେ ଗୋଟିକ ନେଇ ପୁଣି କବାଟ ବନ୍ଦ କଲେ । ଲୋକେ ବିସ୍ମୟରେ ବସିଥା'ନ୍ତି । ପୁଣି କବାଟ ଅଳ୍ପ ଖୋଲି ବୈଦ୍ୟ ହାତୁଡ଼ିଟାଏ ମଗାଇଲେ । ତାହାବି ତତ୍‌କ୍ଷଣାତ୍ ଆଣି ଦିଆଗଲା । ପୁଣି କବାଟ ବନ୍ଦ ହେଲା ।

ଏଥର ଲୋକେ ଆହୁରି ଉଦ୍‌ବିଗ୍ନ ହୋଇପଡ଼ିଲେ । ଭିତରୁ ଠକ୍ ଠକ୍ ଶବ୍ଦ ଶୁଭୁଥାଏ । "ହାଇହୋ ! କଲା ହାତୁଡ଼ିରେ ଚକଟା ହେବା

କୃପାଲ ସିଂହ

କଥା କେବେ ଶୁଣାଯାଇଛି ?" ଜଣେ ଭଦ୍ରଲୋକ ଆଉ ଜଣଙ୍କୁ ଚୁପ୍‌ଚାପ ପଚାରିଲେ । "ନିଶ୍ଚେ ଜମିଦାରଙ୍କୁ କଠାକଠି କରାହେଉଛି । ତାଙ୍କ ଦେହ ଭିତରେ କୌଣସି ଭୟଙ୍କର ବ୍ୟାଧି ଦେଖା ଦେଇଥିବ ।" ଆରଜଣକ କହିଲେ ।

"କିନ୍ତୁ ଏମିତି କଠାକଠି କଲେ ବାପା ବଞ୍ଚିବେ ତ ?" ଜମିଦାରଙ୍କ ବଡ଼ ପୁଅ ତାଙ୍କ ମାମୁଁଙ୍କୁ କାନ୍ଦ କାନ୍ଦ ହୋଇ ପଚାରିଲେ । ମାମୁଁ, ଅର୍ଥାତ୍ ଜମିଦାରଙ୍କ ଶାଳକ, ମଧ୍ୟ କାନ୍ଦ କାନ୍ଦ ହେଲେ ।

ହଠାତ୍ ପୁଣି କବାଟ ଅଳ୍ପ ଖୋଲିବାର ଦେଖାଗଲା । ବୈଦ୍ୟ କହିଲେ, "ଗୋଟିଏ ଶାବଳ ଆଣିଲ !" ସେ ନିଜେ ବିଚଳିତ ଦିଶୁଥିଲେ । ତାଙ୍କ ହାତକୁ ଶାବଳ ବଢ଼ାଇ ଦେଉଁ ଦେଉଁ ଜମିଦାରଙ୍କ ଶାଳକ ପଚାରିଲେ, "ସତ କହନ୍ତୁ, ବେମାର କ'ଣ ଏଡ଼େ ଗମ୍ଭୀର ଯେ ଶାବଳ ନ ହେଲେ ତାକୁ ଛାଡ଼ ହେବ ନାହିଁ ?"

କିନ୍ତୁ ବୈଦ୍ୟ ଏକଥାର ଜବାବ୍ ନ ଦେଇ କବାଟ ବନ୍ଦ କରି ଦେଲେ ।

ପୁଣି ଠକ୍ ଠକ୍ ଶବ୍ଦ ଆରମ୍ଭ ହେଲା । ବାହାରେ ଠୁଳ ହୋଇଥିବା ଲୋକେ ବିକଳରେ ପରସ୍ପର ଅନା ଅନି ହେଉଥାନ୍ତି ।

"ବୈଦ୍ୟ ବାପାକୁ ମାରି ପକାଇବେ !" ହଠାତ୍ ଜମିଦାରଙ୍କ ବଡ଼ ପୁଅ କାନ୍ଦି ଉଠି କହିଲେ । ସଙ୍ଗେ ସଙ୍ଗେ ଅନ୍ୟମାନେ କବାଟ ବାଡ଼େଇବାକୁ ଲାଗିଲେ । କିନ୍ତୁ ବୈଦ୍ୟ କବାଟ ନ ଖୋଲିବାରୁ ସମସ୍ତେ ଏକାବେଳେ ଧକ୍କା ଦେଇ କବାଟ ଭାଙ୍ଗି ଭିତରେ ପଶିଲେ ।

ଦେଖିବା ବେଳକୁ ବୈଦ୍ୟ ଏକ ଧ୍ୟାନରେ ନିଜ ଔଷଧ ପେଟୀ ଖୋଲିବାରେ ବ୍ୟସ୍ତ ଅଛନ୍ତି । ଚାବି ହଜାଇ ସେ କଳା, ହାତୁଡ଼ି ଓ ଶାବଳର ଆଶ୍ରୟ ନେଇଛନ୍ତି ।

ସମସ୍ତଙ୍କର ଉତ୍କଣ୍ଠା ଦୂର ହେଲା । ଜମିଦାରଙ୍କ ଶାଳକ ହସି ଉଠିଲେ ।






ଆନନ୍ଦ-ମୁଖର ଅଯୋଧ୍ୟା ନଗରୀର ଜନସାଧାରଣ ବିପୁଳ ଉତ୍ସାହରେ ରାମଙ୍କ ଅଭିଷେକ ସମ୍ପନ୍ନ କଲେ । ରାମ ତେଣିକି ପ୍ରଜାମାନଙ୍କ ହିତାର୍ଥେ ମନୋନିବେଶ କଲେ ।

ଦିନେ ମନ୍ତ୍ରୀ ସୁମନ୍ତ୍ରଙ୍କୁ ଡକାଇ ସେ ରାଜକୋଷରେ କେତେ ଅର୍ଥ ଅଛି ସେ କଥା ଜିଜ୍ଞାସା କଲେ । କାରଣ ପ୍ରଜାଙ୍କ ସୁଖ ପାଇଁ ସେ ଯେଉଁସବୁ ଯୋଜନା କରିଥିଲେ, ସେସବୁ କାର୍ଯ୍ୟକାରୀ କରିବାକୁ ଅର୍ଥ ଲୋଡ଼ା ।

ସୁମନ୍ତ୍ର କହିଲେ, "ମହାପ୍ରଭୁ ! ଗତ ଚୌଦ ବର୍ଷ ଧରି ପ୍ରଜାମାନେ କର ଦେଇନାହାନ୍ତି ।"

"ବୋଧ ହୁଏ ରାଜ୍ୟରେ ଅଭାବ ଅନାଟନ ପଡ଼ିଥିବ । ସେଥିପାଇଁ ଲୋକେ କର ଦେଇପାରି ନାହାନ୍ତି ।" ରାମ ସହାନୁଭୂତିପୂର୍ଣ୍ଣ କଣ୍ଠରେ କହିଲେ ।

ସୁମନ୍ତ୍ର ସଙ୍କୋଚ କଟାଇ କହିଲେ, "ନା ଆଜ୍ଞା । ରାଜ୍ୟ ଧନଧାନ୍ୟରେ ଭରା । କାହାରି ଅଭାବ ନାହିଁ । କିନ୍ତୁ ପ୍ରଜାଙ୍କୁ କେହି କର ଦେବାକୁ କହି ନାହାନ୍ତି । ଧନୀମାନେ ମନକୁମନ କର ପଇଠ କରିବା କଥା । କିନ୍ତୁ ସେମାନେ ଯେତେବେଳେ ତାହା ନ କଲେ ଅନ୍ୟମାନେ ସେ ଦିଗରେ ବା ଉତ୍ସାହ ଅନୁଭବ କରିବେ କାହିଁକି । ତେଣୁ କେହି କର ଦେଇ ନାହାନ୍ତି ।"

"ଭରତ ଏ ଦିଗରେ ଦୃଷ୍ଟି ଦେଲେ ନାହିଁ କିପରି ?" ରାମ ବିସ୍ମୟ ଭରେ ପଚାରିଲେ ।

"ପ୍ରଭୁ ! ରାଜା ଭରତ ସର୍ବଦା ଆପଣଙ୍କ



କଥାହିଁ ଚିନ୍ତା କରୁଥିଲେ । ସେ ଅନ୍ୟ କୌଣସି ବିଷୟ ପ୍ରତି ମନ ଦେଉ ନ ଥିଲେ । ଆପଣଙ୍କ ପାଦୁକା ପୂଜାହିଁ ଥିଲା ତାଙ୍କର ଏକମାତ୍ର ବ୍ରତ । ତାଙ୍କ ଉଦାରତା ଓ ଏକାଗ୍ରତାର ସୁଯୋଗ ନେଇ ବହୁ ଲୋକ ତାଙ୍କ ଆଗରେ ଆପଣଙ୍କ ପ୍ରଶଂସା ଗାନ କରି ପୁରସ୍କାର ଧରି ଫେରୁଥିଲେ । କର ପ୍ରସଙ୍ଗ ଉଠାଇଲେ ସେ କହୁଥିଲେ ଲୋକେ କର ଦେବାକୁ ଚାହିଁଲେ ଦିଅନ୍ତୁ, ନ ହେଲେ ନ ଦିଅନ୍ତୁ । ଆମେ କଡ଼ା କଥା କହି କର ମାଗିବାକୁ କିଏ ?" ସୁମନ୍ତ୍ର ଜଣାଇଲେ ।

ରାମ ଅବସ୍ଥା ବୁଝିଲେ । ଟିକିଏ ରହି କହିଲେ, "କିନ୍ତୁ ଶୂନ୍ୟ ରାଜକୋଷ ନେଇ ମୁଁ ପ୍ରଜାଙ୍କ ସେବା କରିବି କିପରି ?"

ସେତିକିବେଳେ ଲକ୍ଷ୍ମଣ ଆସି ପହଞ୍ଚିଲେ । ସୁମନ୍ତ୍ର ତାଙ୍କୁ ମଧ୍ୟ ରାଜକୋଷର ଅବସ୍ଥା ଜଣାଇଲେ ।

ଲକ୍ଷ୍ମଣ ଟିକିଏ ଚିନ୍ତା କରି ସୁମନ୍ତ୍ରଙ୍କୁ କହିଲେ, "ଆପଣ ମୋ ପରାମର୍ଶ ଗ୍ରହଣ କରନ୍ତୁ । ଆପଣ ଡେଙ୍ଗୁରା ପିଟି ଘୋଷଣା କରିଦିଅନ୍ତୁ ଯେ ଯିଏ କର ଦେଇନାହିଁ, ସିଏ ଗୋଟାଏ ପାଣିକଖାରୁ ଓଜନର ସୁନା ଦେଉ । ଆମ ସମୃଦ୍ଧ ପ୍ରଜାମାନେ ନିଶ୍ଚୟ ଏ ପ୍ରସ୍ତାବକୁ ସାଦରେ ଗ୍ରହଣ କରିବେ ।"

ଲକ୍ଷ୍ମଣଙ୍କ ପ୍ରସ୍ତାବ ଅନୁସାରେ ସୁମନ୍ତ୍ର ଦେଶବ୍ୟାପି ଅନୁରୂପ କଥା ଘୋଷଣା କରିଦେଲେ । ଲକ୍ଷ୍ମଣ ଜାଣିଥିଲେ ଯେ ଯେଉଁ ଲୋକେ ଚଉଦବର୍ଷ କାଳ କର ଦେଇ ନାହାନ୍ତି, ସେମାନେ ପାଣିକଖାରୁ କାହିଁକି ପଥର ମୁଣ୍ଡା ଓଜନର ସୁନା ମଧ୍ୟ ଦେଇପାରିବେ । ତଥାପି ଲୋକଙ୍କ ପ୍ରତିକ୍ରିୟା ଜାଣିବା ଉଦ୍ଦେଶ୍ୟରେ ସେ ହନୁମାନଙ୍କୁ ଡକାଇ କହିଲେ, ତୁମେ ଗୁପ୍ତ ରୂପରେ ଲୋକଙ୍କ ଭିତରେ ବିଚରଣ କରି ସେମାନଙ୍କ କଥାବାର୍ତ୍ତା ଶୁଣ । ଆମ ନିର୍ଦ୍ଦେଶରେ କେହି ଅସନ୍ତୁଷ୍ଟ ନୁହେଁ —ମୁଁ ଏତିକି ଜାଣିବାକୁ ଚାହେଁ ।"

ହନୁମାନ ସୂକ୍ଷ୍ମ ରୂପରେ ଯାଇ ଜନସାଧାରଣଙ୍କ ଗହଣରେ କିଛି ସମୟ ବିଚରଣ କରି ଫେରି ଆସିଲେ ଓ ଲକ୍ଷ୍ମଣଙ୍କୁ ଜଣାଇଲେ,

"ଲୋକେ ଆନନ୍ଦରେ ପାଣିକଖାରୁ ଓଜନର ସୁନା ଦେବାକୁ ପ୍ରସ୍ତୁତ । ସେମାନେ ପର୍ଯ୍ୟନ୍ତ କର ଦେଇ ନ ଥିବା ସତ୍ତ୍ୱେ ସେମାନଙ୍କୁ ଯେ କୌଣସି ଦଣ୍ଡ ପାଇବାକୁ ପଡ଼ୁନାହିଁ, ସେଥିନିମନ୍ତେ ସେମାନେ ଆଶ୍ୱସ୍ତ । ସେମାନଙ୍କୁ ଯାହା ଦେବାକୁ କୁହାଯାଉଛି, ତାହା ସେମାନଙ୍କ ପକ୍ଷରେ ମୋଟେ ଅସୁବିଧାଜନକ ନୁହେଁ ।"

କିନ୍ତୁ ଲକ୍ଷ୍ମଣ ତଥାପି ନିଜ ପଦକ୍ଷେପ ସମ୍ପର୍କରେ ନିଶ୍ଚିତ ହୋଇପାରିଲେ ନାହିଁ । ଜନସାଧାରଣଙ୍କ ଭିତରେ ଏପରି ସାଧୁ-ସଜ୍ଜନ ନିଶ୍ଚୟ ଥିବେ ଯେଉଁମାନେ କର ଦେଇସାରିଛନ୍ତି । ପାଣିକଖାରୁ ଓଜନର ସୁନା ଦେଇ ସେମାନେ କାହିଁକି କ୍ଷତିଗ୍ରସ୍ତ ହେବେ ?

ଲକ୍ଷ୍ମଣ ଏ ସମସ୍ୟା ଉପରେ ଗଭୀର ଚିନ୍ତା କରି ହନୁମାନଙ୍କୁ ଧରି ଧର୍ମଙ୍କ ମନ୍ଦିରରେ ପ୍ରବେଶ କଲେ । ସେଠାରେ ଦୁହେଁ କିଛି କାଳ ଧ୍ୟାନ କରିସାରି ସନ୍ଧ୍ୟା ବେଳକୁ ପୁଣି ବାହାରକୁ ଆସିଲେ । ସେତେବେଳକୁ ଉଭୟେ ପ୍ରସନ୍ନ ଦେଖାଯାଉଥାନ୍ତି । ଲକ୍ଷ୍ମଣଙ୍କ ମନରେ ଆଉ କୌଣସି ଦ୍ୱନ୍ଦ୍ୱ ନ ଥାଏ ।

ସକାଳ ହେବା ମାତ୍ରେ ରାଜପ୍ରାସାଦ ସମ୍ମୁଖରେ ଗୋଟିଏ ବଡ଼ ତରାଜୁ ରଖା ହେଲା । ତା'ର ଗୋଟିଏ ପାଖରେ ପାଣିକଖାରୁଟିଏ ଥୁଆ ହେଲା । ଲୋକେ ଦଳ ଦଳ ହୋଇ ସୁନା



ଗଣ୍ଠିଲମାନ ଧରି ଆସି ପହଞ୍ଚିଲେ । ଆଶ୍ଚର୍ଯ୍ୟର କଥା, ତରାଜୁ ପ୍ରତ୍ୟେକ କ୍ଷେତ୍ରରେ ଭିନ୍ନ ଭିନ୍ନ ପ୍ରକାର କାମ କଲା । କିଏ ହୁଏତ ପ୍ରଚୁର ସୁନା ରଖିବା ସତ୍ତ୍ୱେ ପାଣିକଖାରୁ ଅଧିକ ଓଜନିଆ ହେବାର ଦେଖାଗଲା । ଫଳରେ ତାକୁ ଆହୁରି ଅଧିକ ସୁନା ଆଣି ରଖିବାକୁ ହେଲା । ଆଉ କିଏ ହୁଏତ ସାମାନ୍ୟ ସୁନା ରଖିବା ମାତ୍ରେ ତା'ର ଓଜନ ପାଣିକଖାରୁ ସହିତ ସମାନ ହେବାର ଦେଖାଗଲା ।

ଲୋକେ ବିସ୍ମିତ ହୋଇ ତରାଜୁର ସେ ବିଚିତ୍ର ରୀତି ଲକ୍ଷ୍ୟ କରୁଥାନ୍ତି । ସମସ୍ତେ ବୁଝୁଥାନ୍ତି ଯେ ତରାଜୁ ପଛରେ ଅନ୍ୟ କୌଣସି ଶକ୍ତି କାର୍ଯ୍ୟ



କରୁଛି । କ୍ରମେ ଏ କଥା ସ୍ପଷ୍ଟ ହୋଇଗଲା ଯେ ବାସ୍ତବରେ ଯାହାର ଯେତିକି କର ଦେବାର ଅଛି, ତରାଜୁ ସେତିକି ଆଦାୟ କରି ନେଉଛି । ଯିଏ ପୂର୍ବରୁ କର ଦେଇଛି, ସିଏ ତୋଳାଏ ସୁନା ରଖିଲେ ମଧ୍ୟ ତା'ର ଓଜନ ପାଣିକଖାରୁ ସହ ସମାନ ହୋଇଯାଉଛି ।

ଏ ରହସ୍ୟ ବୁଝିବା ପରେ ଲୋକେ ସ୍ୱତଃପ୍ରବୃତ୍ତ ହୋଇ ନିଜ ନିଜର ଯଥାର୍ଥ ଦେୟ ଦେଇଦେବାକୁ ଲାଗିଲେ । ତେଣିକି ଓଜନରେ ଆଉ ବିଶେଷ ତାରତମ୍ୟ ହେଲା ନାହିଁ । କ୍ରମେ ସମସ୍ତେ କର ଦେଇଦେଲେ । ରାଜକୋଷ ପୁରି ଉଠିଲା ।

ରାମ ସମସ୍ତ ଶୁଣି ଲକ୍ଷ୍ମଣ ଓ ସୁମନ୍ତ୍ରଙ୍କୁ ନିଜ ମନ୍ତ୍ରଣାଗୃହକୁ ଡକାଇଲେ । ଲକ୍ଷ୍ମଣଙ୍କ ପଛେ ପଛେ ହନୁମାନ ମଧ୍ୟ ସୂକ୍ଷ୍ମ ରୂପରେ ଗଲେ । ରାମ ଲକ୍ଷ୍ମଣଙ୍କୁ ପଚାରିଲେ, "କଥା କ'ଣ ? କ୍ଷେତ୍ର ବିଶେଷରେ ପାଣିକଖାରୁ ମହଣ ମହଣ ସୁନା ସହିତ ସମାନ ହେବାର ତାତ୍ପର୍ଯ୍ୟ କ'ଣ ? କୌଣସି ଲୋକ ପ୍ରତାରିତ ହୋଇ ନାହାନ୍ତି ତ ? କାହାରି ପ୍ରତି ଅନ୍ୟାୟ ହୋଇନାହିଁ ତ ?"

ଲକ୍ଷ୍ମଣ କରଯୋଡ଼ି ହୋଇ କହିଲେ, "ପ୍ରଭୁ ! କାହାରି ପ୍ରତି ସାମାନ୍ୟତମ ଅନ୍ୟାୟ ମଧ୍ୟ ହୋଇ ନାହିଁ । ଧର୍ମଙ୍କ ତତ୍ତ୍ୱାବଧାନରେ ସବୁ ହୋଇଛି । ଏଥିରେ ହନୁମାନଙ୍କୁହିଁ ପରିଶ୍ରମ କରିବାକୁ ପଡ଼ୁଛି । ସେ ତରାଜୁର ଦଣ୍ଡ ଉପରେ ସୂକ୍ଷ୍ମ ରୂପରେ ଦଣ୍ଡାୟମାନ ଥାଇ ଧର୍ମଙ୍କ ନିର୍ଦ୍ଦେଶକୁ ଅପେକ୍ଷା କରୁଥାନ୍ତି । ଧର୍ମଙ୍କର ଏକ ଜ୍ୟୋତି ଦେବୀ ରୂପରେ ରହି କାହା ପାଖରୁ କେତେ ସୁନା ଅସୁଲ କରିବା ଆବଶ୍ୟକ, ସେ କଥା କହିଦେଉଥାନ୍ତି । ହନୁମାନ ସେହି ଅନୁସାରେ ଦଣ୍ଡକୁ ଗୋଡ଼ରେ ଦବାଇ ଦେଉଥାନ୍ତି । ମୁଁ ଓ ହନୁମାନ ଧର୍ମଙ୍କୁ ପ୍ରାର୍ଥନା କରି ତାଙ୍କୁ ଏତିକି ସହାୟତା କରିବା ପାଇଁ ମଗାଇଥିଲୁ । ଧର୍ମଙ୍କ ଉପସ୍ଥିତିରେ ଅନ୍ୟାୟର ପ୍ରଶ୍ନ ବା କାହିଁ ? ଲୋକେ ମଧ୍ୟ ବୁଝିଛନ୍ତି ଯେ ପ୍ରତ୍ୟେକ ନିକଟରୁ ତାର ଦେୟ ମାତ୍ର ଆଦାୟ କରାଯାଇଛି; ତହିଁରୁ

ଅଧିକ ନୁହେଁ ।"

ରାମ କିଛି କହିବା ପୂର୍ବରୁ ଧର୍ମଙ୍କ କଣ୍ଠସ୍ୱର ଶୁଣାଗଲା : "ଲକ୍ଷ୍ମଣଙ୍କ ବକ୍ତବ୍ୟ ସତ୍ୟ । କାହାରି ପ୍ରତି ଅନ୍ୟାୟ କରାଯାଇ ନାହିଁ । ଯାହା ହୋଇଛି, ତାହା ମୋ ତତ୍ତ୍ୱାବଧାନରେ ହୋଇଛି ।"

ହନୁମାନ୍ ସୂକ୍ଷ୍ମ ରୂପ ତ୍ୟାଗ କରି ନିଜ ରୂପରେ ରାମଙ୍କ ଆଗରେ ପ୍ରକଟିତ ହେଲେ ଓ ପ୍ରଣାମ କଲେ । ରାମ ସନ୍ତୁଷ୍ଟ ହେଲେ ।

କିଛିଦିନ ଅନ୍ତେ ରାମ କୋଶଳ ରାଜ୍ୟର ସମସ୍ତ ନାଗରିକଙ୍କୁ ଏକ ଭୋଜି ଦେବାର ବ୍ୟବସ୍ଥା କଲେ । ହନୁମାନଙ୍କ ତତ୍ତ୍ୱାବଧାନରେ ହିଁ ସମସ୍ତ ଆୟୋଜନ ଚାଲିଥାଏ । ଗଣି ଗଣି ଖାଦ୍ୟଦ୍ରବ୍ୟ ପ୍ରସ୍ତୁତ ହେଉଥାଏ । ହନୁମାନଙ୍କ ଅକ୍ଳାନ୍ତ ପରିଶ୍ରମ ଦେଖି ସୀତାଙ୍କ ମାତୃହୃଦୟରେ ଗଭୀର କରୁଣାର ଉଦ୍ରେକ ହୁଅନ୍ତେ, ସେ କହିଲେ, "ବତ୍ସ ! ତୁମେ କେତେ ପରିଶ୍ରମ କଲଣି । ଅତିଥିମାନେ ଆସି ପହଞ୍ଚିଲେ, ସେମାନଙ୍କ ଦେଖାଶୁଣା କରିବା ନିମନ୍ତେ ତୁମକୁ ଆହୁରି କେତେ ପରିଶ୍ରମ କରିବାକୁ ହେବ । ସେତେବେଳେ ତୁମେ ନିଜେ ଖିଆପିଆ କରିବାକୁ ବେଳ ପାଇବ ନାହିଁ । ତେଣୁ ତୁମେ ପ୍ରଥମରୁ ଖାଇନିଅ ।"

ସୀତାଙ୍କ କଥା ମାନି ହନୁମାନ ବାଧ୍ୟ ସନ୍ତାନ ଭଳି ତାଙ୍କ ପଛେ ପଛେ ଯାଇ ରୋଷେଇ ଘରେ



ଖାଇବାକୁ ବସିଗଲେ । ସୀତା ସ୍ୱୟଂ ତାଙ୍କୁ ପରଷିବାକୁ ଲାଗିଲେ । କିନ୍ତୁ ସୀତା ଯେତେ ଯାହା ଦେଲେ ମଧ୍ୟ ହନୁମାନ ନିମିଷକେ ସେସବୁ ଉଦରସ୍ଥ କରି ପାତ୍ର ଖାଲି କରିଦେଉଥାନ୍ତି । ମନେ ହେଲା ଏହା ଯେପରି ଚାଲିଥିବ ! ସୀତା ଦେଉଥିବେ ଓ ହନୁମାନ ଶେଷ କରିଦେଉଥିବେ !

ସୀତା ଯାଇ ରାମଙ୍କୁ ଏ ବୃତ୍ତାନ୍ତ ଶୁଣାଇଲେ । ରାମ ହସି କହିଲେ, "ତୁମେ କ'ଣ ହନୁମାନଙ୍କୁ ଜଣେ ସାଧାରଣ ବୀର ମାତ୍ର ବୋଲି ଧରିନେଇଥିଲ ? ସେ ସ୍ୱୟଂ ଶିବଙ୍କ ବିଭୂତି । ତାଙ୍କୁ ଖାଲି ଖାଦ୍ୟ ଦ୍ୱାରା ତୃପ୍ତ କରିହେବ ନାହିଁ । ତାଙ୍କୁ ପ୍ରାର୍ଥନା କରିବାକୁ ହେବ ।"



ସୀତା ପୁଣି ସେଥରେ ଘର ଭିତରକୁ ଯାଇ ହନୁମାନଙ୍କ ପଛରେ ଠିଆ ହେଲେ ଓ ମନେ ମନେ କହିଲେ, ହେ ଶିବ ! ଏଥର ଆପଣଙ୍କ ବିଭୂତିର ରହସ୍ୟ ବୁଝିଲି । ଆପଣଙ୍କୁ ସାମାନ୍ୟ ସ୍ଥୂଳ ଭୋଜନ ଅର୍ପଣ କରି ମୁଁ ବା କପରି ତୃପ୍ତ କରିପାରିବି ? ଆପଣ କୃପା କରନ୍ତୁ ଓ ତୃପ୍ତ ହୁଅନ୍ତୁ ।" ଏହା କହି ସୀତା ତିନିଥର ପଞ୍ଚାକ୍ଷରୀ ମହାମନ୍ତ୍ର ଉଚ୍ଚାରଣ କଲେ ।

ସଙ୍ଗେ ସଙ୍ଗେ ହନୁମାନ ତୃପ୍ତ ହୋଇ ଉଠିବାକୁ ଉଦ୍ୟତ ହେଲେ । ସୀତା ଆଗକୁ ଆସି ପଚାରିଲେ, "ପୁତ୍ର ! ଆଉ କ'ଣ ଦେବି ?"

"ମା' ! ପେଟ ପୁରା ଭରିଗଲାଣି ।" ଏହା କହି ହନୁମାନ ବାହାରିଗଲେ ।

ସୀତା ଅନ୍ନପୂର୍ଣ୍ଣାଙ୍କୁ ଧ୍ୟାନ କଲେ । ସଙ୍ଗେ ସଙ୍ଗେ ପାତ୍ରମାନ ପୁଣି ଭରପୁର ହୋଇଉଠିଲେ । କ୍ରମେ ନାଗରିକମାନେ ଆସି ପହଞ୍ଚିଗଲେ । ଭୋଜନ ପର୍ବ ଆରମ୍ଭ ହେଲା । ପ୍ରାସାଦର ଗୋଟିଏ ଅଂଶରେ ବାନରମାନେ ଖାଇବାକୁ ବସିଲେ ।

ବାନର ଦଳରେ ଥିଲା ଗୋଟିଏ ଛୋଟ ଚପଳମତି ବାନର । ସେ ଆମ୍ବର ଉପରେ ହାତ ଦବାଇଦେବା ମାତ୍ରେ କୋଳି ମଞ୍ଜିଟାଏ ହଠାତ୍ ଚୋପାରୁ ଖସି ଉପରକୁ ଛିଟିକି ଗଲା । ତାହା ଦେଖି ବାନରଟି କହିଲା, "ଆରେ ! ତୁ ସାମାନ୍ୟ ମଞ୍ଜି ! ତୁ ପୁଣି ମୋ ଆଗରେ ଡେଇଁବା କସରତ୍ ଦେଖାଇବୁ ! ଦେଖ ମୋ କରାମତି !"

ଏହା କହି ଛୋଟ ବାନର ତତ୍‌କ୍ଷଣାତ୍ କୁଦି-ଉଠିଲା । ତାହା ଦେଖି ଉତ୍ସାହ ଭରେ ଆଉ କେତେଜଣ ବାନର ମଧ୍ୟ କୁଦିପଡ଼ିଲେ । କ୍ରମେ କ୍ରମେ ସମସ୍ତେ ଆନନ୍ଦରେ କୁଦିବାକୁ ଲାଗିଲେ । ଏପରିକି ଅଙ୍ଗଦ, ନୀଳ ଓ ସୁଗ୍ରୀବ ମଧ୍ୟ ବାଦ୍ ପଡ଼ିଲେ ନାହିଁ । ହନୁମାନ ଭାବିଲେ, ହୁଏତ ଏପରି କୁଦିବା ଅର୍ଥ ରାମଙ୍କ ଭୋଜି ପ୍ରତି ସମ୍ମାନ ଦେଖାଇବା । ତେଣୁ ସେ ମଧ୍ୟ ଥରେ ଡିଆଁ ମାରି ଉପରକୁ ଉଠି ପୁଣି ବସିପଡ଼ିଲେ ।

ସେ ଆନନ୍ଦ କୋଳାହଳରେ ଆକୃଷ୍ଟ ହୋଇ ରାମ ସେଠାରେ ପହଞ୍ଚି ହନୁମାନଙ୍କୁ ପଚାରିଲେ, "କହେ‌ା, ତୁମେ କ'ଣ ତୃପ୍ତ ହୋଇ ବସିଛ ?"

"ଆଜ୍ଞା ! ଏସବୁ ବୀରଙ୍କ ଆଗରେ ମୋର ବା ଶକ୍ତି କେତେ ଯେ ଦେଖାଇବି ?" ହନୁମାନ କହିଲେ ।

ଜାମ୍ବବାନ ଆଗକୁ ଆସି ରାମଙ୍କୁ କହିଲେ, "ପ୍ରଭୁ ! ହନୁମାନ ଆପଣାଠୁଏଁ କୌଣସି କରାମତି ଦେଖାନ୍ତି ନାହିଁ । ଯଦି କୌଣସି ମହତ୍ତ୍ୱ ଆଦେଶ ତାଙ୍କୁ ମିଳେ, ତେବେ ଯାଇ ତାଙ୍କ ଶକ୍ତି ସ୍ଫୁରିତ ହୁଏ ।"

ରାମ ଗୋଟିଏ ଶ୍ୱେତ କମଳ ହନୁମାନଙ୍କ ହାତରେ ଦେଇ କହିଲେ, "ହନୁମାନ ! ସୂର୍ଯ୍ୟଙ୍କୁ ଶ୍ୱେତପଦ୍ମଧର ବୋଲି କୁହାଯାଏ । ଏ ପୁଷ୍ପ ତାଙ୍କ ହାତରେ ଅର୍ପିତ ହେବା କଥା । କିନ୍ତୁ ତୁମ ଛଡ଼ା ତାଙ୍କ ପାଖକୁ ଯାଇପାରିବ କିଏ ?"

"ଶ୍ରୀରାମଙ୍କ ଆଜ୍ଞା !" କହି ହନୁମାନ ସଙ୍ଗେ ସଙ୍ଗେ ଆକାଶକୁ ଉଠିଗଲେ । ସୂର୍ଯ୍ୟଙ୍କ ରଥ ଧରିପକାଇ ସେ କହିଲେ, "ଗୁରୁଦେବ ! ଏ କମଳ ଆପଣଙ୍କୁ ସମର୍ପଣ କରିବା ନିମନ୍ତେ ମୁଁ ରାମଙ୍କ ଆଜ୍ଞାରେ ଏଠାକୁ ଆସିଛି ।" ଏହା କହି ହନୁମାନ ପଦ୍ମଟି ସୂର୍ଯ୍ୟଦେବଙ୍କ ପାଦରେ ରଖିଲେ ।

ସୂର୍ଯ୍ୟ କହିଲେ, "ଚିରଞ୍ଜିବୀ ହୁଅ !" ଏହା ପରେ ପଦ୍ମଟି ହାତକୁ ନେଇ ତାହା ହନୁମାନଙ୍କୁ ପ୍ରତ୍ୟର୍ପଣ କରି ସେ କହିଲେ, "ଏହା ତୁମେ ମୋ ତରଫରୁ ରାମଙ୍କୁ ଦିଅ । ଏହାର ପ୍ରଭାବରେ ତାଙ୍କ ରାଜ୍ୟରେ ଶାନ୍ତି ଓ ସୌଭାଗ୍ୟ ବିରାଜିତ ହେବ ।"

ସେ ଶ୍ୱେତ କମଳ କଦାପି ଶୁଖିବ ନାହିଁ ଏବଂ ତା' ଗୁଣରୁ ରାଜ୍ୟରେ ଯଥା ସମୟରେ ବର୍ଷା ହେବ, କ୍ଷେତ ଉଚ୍ଛୁଳ ଫସଲ ହେବ ଏବଂ ଲୋକେ ନିରୋଗ ରହିବେ ବୋଲି ହନୁମାନ ବୁଝିଲେ । ସେ ସୂର୍ଯ୍ୟଙ୍କଠାରୁ ବିଦାୟ ନେଇ ରାମଙ୍କ ନିକଟକୁ ବାହୁଡ଼ି ଆସିଲେ ଓ ପଦ୍ମଟି ତାଙ୍କୁ ଅର୍ପଣ କଲେ ।

ରାମ ଆନନ୍ଦରେ ହନୁମାନଙ୍କୁ ଆଲିଙ୍ଗନ କଲେ । ହନୁମାନ ରାମ ଓ ସୀତାଙ୍କୁ ପ୍ରଣିପାତ କରନ୍ତେ ସୀତା ତାଙ୍କୁ କହିଲେ, "ପୁତ୍ର ! ତୁମେ ଚିରଞ୍ଜିବୀ ହୁଅ !"





# କର୍ଣ୍ଣାଟକର ସହୀଦ୍ ରାଣୀ

ବିଖ୍ୟାତ ସିପାହୀ ବିଦ୍ରୋହ (୧୮୫୭)ର ତିରିଶ ବର୍ଷ ପୂର୍ବରୁ ଭାରତ ଅଧିକାର କରିବାକୁ ଆସିଥିବା ଇଷ୍ଟ ଇଣ୍ଡିଆ କୋମ୍ପାନୀ ନାମଧେୟ ବ୍ରିଟିଶ୍ ବଣିକ ସରକାର କର୍ଣ୍ଣାଟକର ଏକ କ୍ଷୁଦ୍ର ରାଜ୍ୟର ରାଣୀଙ୍କ ହାତରେ ଦାରୁଣ ପରାଭବ ଲଭିଥିଲେ । ଶକ୍ତିଶାଳୀ ବ୍ରିଟିଶ୍ ଫୌଜ ବିରୁଦ୍ଧରେ ଅସ୍ତ୍ର ଉତ୍ତୋଳନ କରିବା ଦିଗରେ ରାଣୀ ଚିନାମ୍ମା ଥିଲେ ପ୍ରଥମ ଭାରତୀୟ ନାରୀ ।



କିଟ୍ଟୁର୍ କ୍ଷୁଦ୍ର ହେଲେ ବି ଥିଲା ସମୃଦ୍ଧିଶାଳୀ ରାଜ୍ୟ । ଏହି ରାଜ୍ୟର ରାଜା ମଲ୍ଲସର୍ଜ୍ୟଙ୍କର ସାନରାଣୀ ହେଲେ ଚିନାମ୍ମା । ଯଦିଓ ବଡ଼ରାଣୀ ରୁଦ୍ରାମ୍ମାଙ୍କର ପୁଅଟିଏ ଥିଲେ ଓ ଚିନାମ୍ମାଙ୍କର ମଧ୍ୟ ପୁଅଟିଏ ଥିଲେ, ତଥାପି ରାଜା ମୃତ୍ୟୁଶଯ୍ୟାରେ ଶାୟିତ ଥିବା ବେଳେ ଦୂରଦର୍ଶିନୀ ଚିନାମ୍ମାଙ୍କ ପରାମର୍ଶ କ୍ରମେ ଆହୁରି ଏକ ଶିଶୁକୁ ପୋଷ୍ୟପୁତ୍ର ରୂପେ ଗ୍ରହଣ କଲେ ।



ରୁଦ୍ରାମ୍ମାଙ୍କର ରାଜ୍ୟ ଶାସନ ଦିଗରେ କୌଣସି ଆଗ୍ରହ ନ ଥିଲା । ମଲ୍ଲସର୍ଜ୍ୟଙ୍କ ମୃତ୍ୟୁ ଅନ୍ତେ ଚିନାମ୍ମା ବଡ଼ରାଣୀଙ୍କ ପୁଅକୁ ଗାଦିରେ ବସାଇଲେ ଏବଂ ନିଜ ପୁଅକୁ ଶିଶୁ ରାଜାଙ୍କ ଦେହରକ୍ଷୀ ନିଯୁକ୍ତ କଲେ । କିନ୍ତୁ ସମସ୍ତଙ୍କୁ ଦାରୁଣ ଦୁଃଖ ଦେଇ ଅଳ୍ପଦିନ ଭିତରେ ଉଭୟ ରାଜପୁତ୍ର ମୃତ୍ୟୁ ଲଭିଲେ । ଚିନାମ୍ମା ସେତେବେଳେ ପୋଷ୍ୟପୁତ୍ରଙ୍କର ଅଭିଷେକ କରାଇଲେ ।



ସେତେବେଳେ ଭାରତର ବିଭିନ୍ନ ଅଞ୍ଚଳମାନ ଇଷ୍ଟଇଣ୍ଡିଆ କୋମ୍ପାନୀ ଅଧିକାର କରିନେଇ ଥିଲେ । କିଟୁର୍ ରାଜ୍ୟକୁ ପାଇବା ଲୋଭରେ କୋମ୍ପାନୀର ଉଚ୍ଚ କର୍ମଚାରୀ ଥ୍ୟାକାରେ ଦଳେ ସୈନ୍ୟ ଧରି ଆସି କିଟୁର୍‌ରେ ଡେରା ପକାଇଲେ । ସେ ଉଦ୍ଧତ ଭାବରେ ରାଣୀଙ୍କୁ ନିଜ ଶିବିରକୁ ଡକାଇ ଚିଠି ପଠାଇଲେ । ରାଣୀ ସେ ଚିଠି ତାଚ୍ଛଲ୍ୟଭରେ ଫୋପାଡ଼ି ଦେଲେ ।



କ୍ରୁଦ୍ଧ ହୋଇ ଥ୍ୟାକାରେ ଘୋଷଣା କଲେ ଯେ କିଟୁର ରାଜ୍ୟକୁ କୋମ୍ପାନୀ ହାତକୁ ନେଲେ । ସେ ନିଜ ସୈନ୍ୟଦଳକୁ ଦୁର୍ଗ ଆଡ଼କୁ ମାଡ଼ି ଯିବାକୁ ହୁକୁମ ଦେଲେ । ସେ ସ୍ୱପ୍ନରେ ବି ଭାବି ନ ଥିଲେ ଯେ ତାଙ୍କୁ କୌଣସି ପ୍ରତିରୋଧ ସାମନା କରିବାକୁ ହେବ । କିନ୍ତୁ ହଠାତ୍ ଦୁର୍ଗ ଆଡୁ ହେଲା ଗୁଳି ବର୍ଷଣ । ଥ୍ୟାକାରେଙ୍କ ଦୁଇ ଦକ୍ଷ ସହକାରୀ ବ୍ଲାକ୍ ଓ ଡିପ୍‌ଟନ୍ ଟଳି ପଡ଼ିଲେ ।



ଦୁଇ ଯୋଦ୍ଧା ସହକାରୀ ଆକସ୍ମିକ ଭାବରେ ନିହତ ହେବାର ଦେଖି କ୍ରୋଧାନ୍ଧ ଓ ଅପମାନିତ ଥ୍ୟାକାରେ ଏଥର ନିଜେ ସୈନ୍ୟ ଦଳର ନେତୃତ୍ୱ ନେଇ ଦୁର୍ଗ ଆକ୍ରମଣ କଲେ । ଦୁର୍ଗ ଭିତରୁ ସ୍ୱୟଂ ରାଣୀ ଚନ୍ନାମ୍ମା ତାଙ୍କ ସୈନ୍ୟମାନଙ୍କୁ ପରିଚାଳନା କରୁଥାନ୍ତି । ତାଙ୍କ ନିର୍ଦ୍ଦେଶରେ ତାଙ୍କର ଜଣେ ସୈନ୍ୟ ଥ୍ୟାକାରେଙ୍କୁ ଲକ୍ଷ୍ୟ କରି ଗୁଳି ଚଳାଇଲା । ଥ୍ୟାକାରେ ପଞ୍ଚତ୍ୱପ୍ରାପ୍ତ ହେଲେ ।

ବ୍ରିଟିଶ ପକ୍ଷର ହେଲା ପୂର୍ଣ୍ଣ ପରାଭବ । ବହୁ ବ୍ରିଟିଶ୍ ସୈନ୍ୟ ବନ୍ଦୀ ହେଲେ । ରାଣୀ ଚନାମ୍ମା ସେମାନଙ୍କ ପ୍ରତି ସଦୟ ବ୍ୟବହାର କଲେ । ଦୁର୍ଗ ଭିତରେ ସେମାନଙ୍କୁ ବହୁ ସୁବିଧା ସୁଯୋଗ ଦେଇ ରଖାଗଲା । ବିଜୟିନୀ ରାଣୀଙ୍କ ଅନୁକମ୍ପା ସେମାନଙ୍କୁ ବିସ୍ମିତ କଲା ।





ତେଣେ ଇଷ୍ଟ ଇଣ୍ଡିଆ କୋମ୍ପାନୀର କର୍ତ୍ତାମାନେ ଅପମାନରେ ମୁଣ୍ଡ ଟେକି ପାରୁ ନ ଥାନ୍ତି । ଏକ ଜରୁରୀ ବୈଠକରେ ସେମାନେ ନିଜ ଭୂଲୁଣ୍ଠିତ ସମ୍ମାନର ପୁନରୁଦ୍ଧାର ନିମନ୍ତେ ପୁନର୍ବାର କିଟ୍ଟୁର୍ ଆକ୍ରମଣ କରିବାର ଉଦ୍ୟୋଗ କଲେ । ଛଳେ ବଳେ କୌଶଳେ କିଟ୍ଟୁର୍ ଅଧିକାର କରିବା ହେଲା ସେମାନଙ୍କ ଲକ୍ଷ୍ୟ ।

କୋମ୍ପାନୀର ଭିନ୍ନ ଭିନ୍ନ ଘାଟିରୁ ସୈନ୍ୟଦଳମାନ ଆଣି ଏକାଠି କରାଗଲା । ଏଥର କିଟ୍ଟୁର୍ ଅଭିମୁଖେ ଚାଲିଲେ ବିରାଟ ବାହିନୀ । କିନ୍ତୁ ସେମାନେ ହଠାତ୍ ଦୁର୍ଗ ଆକ୍ରମଣ ନ କରି ରାଣୀଙ୍କୁ ଖବର ଦେଲେ ଯେ ବନ୍ଦୀ ବ୍ରିଟିଶ୍ ସୈନ୍ୟମାନଙ୍କୁ ମୁକ୍ତି ମିଳିଲେ ସେମାନେ ଶାନ୍ତିପୂର୍ଣ୍ଣ ଭାବରେ ଫେରିଯିବେ ।





ରାଣୀ ଚନାମ୍ମା ବ୍ରିଟିଶ୍ ସେନାଧ୍ୟକ୍ଷର ଜବାବରେ ବିଶ୍ୱାସ କଲେ । ବନ୍ଦୀ ବ୍ରିଟିଶ୍ ସୈନ୍ୟମାନେ ମଧ୍ୟ ରାଣୀଙ୍କୁ ଅଭିବାଦନ କରି ପ୍ରତିଶ୍ରୁତି ଦେଲେ ଯେ ସେମାନେ ଚିରକାଳ କିଟ୍ଟୁର୍ ରାଜ୍ୟର ବନ୍ଧୁ ହୋଇ ରହିବେ । କିଟ୍ଟୁର୍ ଆକ୍ରମଣ କରିବେ ନାହିଁ ।



କିନ୍ତୁ ବନ୍ଦୀମାନେ ମୁକ୍ତି ପାଇ ବ୍ରିଟିଶ୍ ଛାଉଣୀରେ ପହଞ୍ଚିଯିବା ମାତ୍ରେ ବ୍ରିଟିଶ୍ ପକ୍ଷ ଦୁର୍ଗ ଆକ୍ରମଣ କଲେ । ଦୁର୍ଗର କେଉଁ ଅଂଶରେ ଅସ୍ତ୍ରଶସ୍ତ୍ର ଓ ଗୋଳା-ବାରୁଦ ଜମା ରହିଛି, ବନ୍ଦୀମାନେ ସେ ସନ୍ଧାନ ଜାଣି ଆସିଥିଲେ । ସେହି ଅଂଶ ଉପରକୁ ଗୋଳା ମାରି ସେସବୁକୁ ଜଳାଇ ଦେଲେ ବ୍ରିଟିଶ୍ ବାହିନୀ । ଫଳରେ ଦୁର୍ଗର ପତନ ହେଲା ।



ଏହିପରି ବିଶ୍ୱାସଘାତକ ରୀତିରେ ଇଷ୍ଟ-ଇଣ୍ଡିଆ କୋମ୍ପାନି କିଟ୍ଟୁର୍ ଅଧିକାର କଲେ । ରାଣୀ ବନ୍ଦୀ ହେଲେ । ଯଦି କିଟ୍ଟୁର୍ ଉପରେ ବ୍ରିଟିଶ୍ ଆଧିପତ୍ୟ ସ୍ୱୀକାର କରିନେବେ, ତାଙ୍କୁ ମୁକ୍ତି ମିଳିବ ବୋଲି ସର୍ତ୍ତ ଦିଆଗଲା । କିନ୍ତୁ ସେ ସର୍ତ୍ତ ରାଣୀ ପ୍ରତ୍ୟାଖ୍ୟାନ କଲେ । ବନ୍ଦୀ ଭାବରେ ବାଇଲ୍‌ହୋଙ୍ଗଲ୍ ଦୁର୍ଗ ଭିତରେ ୧୮୨୯ରେ ସେ ଶେଷ ନିଃଶ୍ୱାସ ତ୍ୟାଗ କରି ସହୀଦ୍ ହେଲେ ।

# କାହାଣୀ-ଶିରୋନାମା-ପ୍ରତିଯୋଗିତା

## ଏକ ଉପଯୁକ୍ତ ଶିରୋନାମା ଦେଇ ୨୫ ଟଙ୍କା ପୁରସ୍କାର-ବିଜୟୀ ହୁଅନ୍ତୁ

## ?

ତୀର୍ଥଜଣ ଗ୍ରାମବାସୀ ଥରେ ତୀର୍ଥ ଯାତ୍ରାରେ ବାହାରିଲେ । ଯେଉଁଠି ରାତି ହୁଏ ସେଠାରେ ସେମାନେ କାହାର ପିଣ୍ଡାରେ ଶୋଇ ପଡ଼ନ୍ତି । ଦିନେ ରାତିରେ ସେମାନେ ରାମପୁର ଗ୍ରାମର ଜଣଙ୍କ ପିଣ୍ଡାରେ ଶୋଇଥିଲେ । ସେ ଘରର ଗୃହିଣୀଙ୍କ ନାମ ଗୌରୀ ।

ପରଦିନ ସନ୍ଧ୍ୟାରେ ସେମାନେ ଏକ ଭିନ୍ନ ଗ୍ରାମରେ ଲକ୍ଷ୍ମୀ ନାମକ ଗୃହିଣୀଙ୍କ ପିଣ୍ଡାରେ ବିଶ୍ରାମ କଲେ । ଲକ୍ଷ୍ମୀ ସେମାନଙ୍କୁ ବେଶ୍ ଆଦର ଭାବ ଦେଖାଇବାରୁ ଖୁସୀ ହୋଇ ଜଣେ ଯାତ୍ରୀ କହିଲେ, "ତୁମେ ଏତେ ଭଲ; ଅଥଚ ରାମପୁରର ଗୌରୀ ବୋଲି ସ୍ତ୍ରୀ ଲୋକ ଏତେ ଅଭଦ୍ର !" ସଙ୍ଗେ ସଙ୍ଗେ ଅନ୍ୟ ଜଣେ ଯାତ୍ରୀ ମିଛରେ ଯୋଡ଼ି ଦେଲେ, "ଆମେ ତା' ପିଣ୍ଡାରେ ଶୋଇଲୁଁ ବୋଲି ସେ ଆମଠାରୁ ଟଙ୍କାଟାଏ ଅସୁଲ କଲା !"

ଲକ୍ଷ୍ମୀ ଗମ୍ଭୀର ହୋଇ କହିଲେ, "ଗୌରୀ ମୋ ବଡ଼ ଭଉଣୀ । ସେ ବଡ଼ ଉଦାର । ମୁଁ ନୁହେଁ । ସେ ଯଦି ତୁମଠୁଁ ଟଙ୍କାଏ ନେଇଛନ୍ତି ବୋଲି ସତ କହୁଛ, ମୋତେ ଦୁଇଟଙ୍କା ଦିଅ ।"

ଯାତ୍ରୀମାନେ ବାଧ୍ୟ ହୋଇ ଦୁଇଟଙ୍କା ଦେଲେ ।

  

ଉପରୋକ୍ତ କାହାଣୀ ପାଇଁ ଉପଯୁକ୍ତ ଶିରୋନାମାଟିଏ ଠିକ୍ କରି ପୋଷ୍ଟକାର୍ଡ଼ରେ ଲେଖି "ଶିରୋନାମା ପ୍ରତିଯୋଗିତା", ଜହ୍ନମାମୁଁ, Chandamama Buildings, 2 & 3 Arcot Road, Madras-600026 ଠିକଣାରେ ଫେବୃଆରି ୨୦ ତାରିଖ ସୁଦ୍ଧା ପଠାନ୍ତୁ । ତେବେ, ଫଟୋ ପରିଚୟ ପ୍ରତିଯୋଗିତା ପାଇଁ ଲେଖା ଏହା କାର୍ଡ଼ରେ ପଠାଇବେ ନାହିଁ ।

ପ୍ରତିଯୋଗିତାର ଫଳ ଏପ୍ରିଲ୍ '୭୮ ସଂଖ୍ୟାରେ ପ୍ରକାଶ ପାଇବ ।

---

ଡିସେମ୍ବର ପ୍ରତିଯୋଗିତାର ନିର୍ବାଚିତ ଶିରୋନାମା : "କାଉ ଚତୁରକୁ ନାଉ ଚତୁର"
ପୁରସ୍କାର ବିଜୟୀ : ସୁନନ୍ଦା ପଣ୍ଡା, ବ୍ରଜରାଜନଗର ।
ବିଜୟିନୀଙ୍କୁ ଅଭିନନ୍ଦନ; ସମସ୍ତ ପ୍ରତିଯୋଗୀଙ୍କୁ ଧନ୍ୟବାଦ ।

# ଫଟୋ-ପରିଚୟୋକ୍ତି-ପ୍ରତିଯୋଗିତା : ପୁରସ୍କାର ୨୪

## ପୁରସ୍କୃତ ପରିଚୟୋକ୍ତି ଏପ୍ରିଲ ୧୯୭୮ ସଂଖ୍ୟାରେ ପ୍ରକାଶ ପାଇବ



P. V. Subramanyam

★



S. G. Seshagiry

★ ଉଭୟ ଚିତ୍ର ପାଇଁ ଉପଯୁକ୍ତ ପରିଚୟୋକ୍ତି ଦୁଇ ତିନି ଧାଡ଼ିରେ ଲେଖା ହୋଇଥିବ ଏବଂ ପରସ୍ପର ସମ୍ବନ୍ଧିତ ହୋଇଥିବ ।

★ ଫେବୃଆରି ୧୫ ସୁଦ୍ଧା ପରିଚୟୋକ୍ତି ପହଞ୍ଚିବା ଦରକାର ।

★ ସର୍ବାଧିକ ଉପଯୁକ୍ତ ବିବେଚିତ ପରିଚୟୋକ୍ତି ପାଇଁ ଟ ୨୫.୦୦ ପୁରସ୍କାର ପଠାଯିବ ।

★ ପରିଚୟୋକ୍ତି ସହ ପ୍ରେରକର ନାମ ଓ ଠିକଣା ପୋଷ୍ଟକାର୍ଡ଼ରେ ଲେଖା ହୋଇ (ସେଥିରେ ଅନ୍ୟ କଥା ରହିବା ଅନୁଚିତ) କହ୍ଲମାମୁଁ ଫଟୋ ପରିଚୟ ପ୍ରତିଯୋଗିତା, ଚନ୍ଦାମାମା ବିଲ୍‌ଡିଙ୍ଗ୍‌ସ୍‌, ମାଡ୍ରାସ-୬୦୦୦୨୬ ଠିକଣାରେ ଆସିବା ଆବଶ୍ୟକ ।

---

## ଡିସେମ୍ବର ପ୍ରତିଯୋଗିତାର ଫଳ

ପ୍ରଥମ ଚିତ୍ର : "କାଗଜ ଡଙ୍ଗା ମୁଁ ଭସାଇ ଦେଉଛି ଶ୍ରାବଣର ସ୍ରୋତଧାରେ"

ଦ୍ୱିତୀୟ ଚିତ୍ର : "ମୋ ଜୀବନ-ଡଙ୍ଗା କିଏ ବାହି ନେବ ଏହି ଭବ-ପାରାବାରେ ?"

ପୁରସ୍କାର ବିଜୟୀ : ନବକିଶୋର ପଟ୍ଟନାୟକ, ତେଲକୋଇ, କେଉଁଝର ।

ବିଜୟୀଙ୍କୁ ଅଭିନନ୍ଦନ : ସମସ୍ତ ପ୍ରତିଯୋଗୀଙ୍କୁ ଧନ୍ୟବାଦ ।

Printed by B. V. REDDI at Prasad Process Private Ltd., and Published by B. VISWANATHA REDDI for CHANDAMAMA CHILDREN'S TRUST FUND (Prop. of Chandamama

# NP 007 ବବଲ ଗମ

**ମାଗଣା**
ଆପଣଙ୍କର 007 ପ୍ୟାକରେ ଯଦି ଗୋଟିଏ ଧଳା ବବଲ ଗମ ପାଇବେ ତାହେଲେ ସଙ୍ଗେ ସଙ୍ଗେ ଦୋକାନିଙ୍କ ଠାରୁ ଦାବି କରି ନିଅନ୍ତୁ ଆଉ ଏକ 007 ବବଲ ଗମ—ମାଗଣାରେ ।

ଖେଳାଟେଳରେ ଯେମିତି ଓସ୍ତାଦ, ପଢ଼ାପଢ଼ିରେ ଯେମିତି ଚୌରସ—ସେ ଜାଣେ କେବଳ NP 007 ବବଲ ଗମରେହିଁ ହୋଇ ପାରିବ ବଡ଼ବଡ଼, ବଢ଼ିଆ ବଢ଼ିଆ ଫୋଟକା— କାରଣ ଏହା ଭରପୂର ହୋଇ ରହିଛି 'ବୁଦବୁଦ ଶକ୍ତିରେ ! NP 007 ବବଲ ଗମରେ ଆପଣ ମଧ୍ୟ ହୋଇ ପାରିବେ ବୁଦବୁଦ ଚମ୍ପିୟନ । ଏକମାତ୍ର ବବଲ୍ ଗମ ଫୁଙ୍କି ବଡ଼ବଡ଼ ଓ ବଢ଼ିଆ ବଢ଼ିଆ ଫୋଟକା କରିବାର ଆନନ୍ଦ ଉପଭୋଗ କରନ୍ତୁ । ଏହି ଉତ୍କୃଷ୍ଟ ଉତ୍ପାଦନ ହେଉଛି NP ଙ୍କର—ଯେ କି ଆଇ ଏସ ଆଇ (ISI) ମୋହର ଥିବା ଏକମାତ୍ର ବବଲ ଗମର ନିର୍ମାତା ଓ ଅଗ୍ରଣୀ।

***NP ବବଲ ଗମ କହିଲେ ବୁଝାଏ 'ବୁଦବୁଦ ଶକ୍ତି'***




## ସାବାସ
# ବୁଦବୁଦ ଚମ୍ପିୟନ !

NP

Dattaram-NP-15 ORI

**ଦି ନ୍ୟାସନାଲ ପ୍ରଡକ୍ଟସ**, ବାଙ୍ଗାଲୋର











# ଆମେ ସମସ୍ତେ ପଢିବାକୁ ଭଲପାଉ

# ଜହ୍ନ ମାମୁଁ






## ତେଣୁ ଆପଣ ବି ପଢନ୍ତୁ ।

ଚନ୍ଦାମାମାକୁ ପଢ଼ନ୍ତି ପୁରୁଷ, ସ୍ତ୍ରୀ, ପିଲାଛୁଆ ସମସ୍ତେ, ବାରଟି ଭାଷାରେ ଯଥା : ଇଂରାଜି, ହିନ୍ଦି, ଓଡ଼ିଆ, ମରାଠୀ, ତେଲୁଗୁ, କାନାଡ଼ା, ତାମିଲ, ଗୁଜରାଟୀ, ମାଲୟଲମ, ବଙ୍ଗଳା, ପଂଜାବୀ, ଆସାମୀରେ ପ୍ରକାଶ ପାଏ । ଶିଶୁମାନଙ୍କ ପାଇଁ ଉଦ୍ଦିଷ୍ଟ ଏହି ପ୍ରତିକାହିଁରେ ଗାଉଁଲି ଗଳ୍ପଗୁଡ଼ିକ ସମସ୍ତଙ୍କର ମନ ହରିନେଇ ଥାଏ । ଚନ୍ଦାମାମା ଶିଶୁମାନଙ୍କ ପାଇଁ ଏକ ମାସିକ ପତ୍ରିକା ଯାହାକୁ ପଢ଼ିଲେ ବୁଢ଼ା ଲାଗେ ମୁଁ ଯୁବକ ହେଇ ଯୁବକ ଲାଗେ ମୁଁ ଜ୍ଞାନ ଅର୍ଜିଇ ।



ବାର୍ଷିକ ଗ୍ରାହକ ହେବାପାଇଁ ଯୋଗାଯୋଗ କରନ୍ତୁ ! ଡଲ୍‌ଟନ୍ ଏଜେନ୍‌ସିଜ,
ଚନ୍ଦାମାମା ବିଲ୍‌ଡିଂ, ମାଡ୍ରାଜ-୬୦୦ ୦୨୬